## ସଂପାଦକ

ଡଃ ଶରତ ଚନ୍ଦ୍ର ନାୟକ
ଡଃ କୈଳାଶ ଚନ୍ଦ୍ର ଦାଶ
ଡଃ ଶ୍ରୀଚରଣ ମହାନ୍ତି
ଶ୍ରୀ ପ୍ରସନ୍ନ କୁମାର ଦାସ
ଶ୍ରୀ ବଙ୍କିମ ଚନ୍ଦ୍ର ଆଗ୍ରୁଣି


## ପ୍ରକାଶକ

କୃଷ୍ଣଚନ୍ଦ୍ର ଗଜପତି ଜନ୍ମଶତବାର୍ଷିକୀ କମିଟି,
ରାଉରକେଲା

## ପ୍ରଚ୍ଛଦ

ବୁଦ୍ଧଦେବ ବସୁ

## ମୁଦ୍ରଣ

ଆର୍‌ବୀ ପ୍ରିଂଟର୍ସ
ବାସନ୍ତୀ କଲୋନୀ, ରା - ୧୨

aarbee printers, B.Col., RKL-12

**EDITORS**

Dr. Sarat Chandra Nayak
Dr. Kailash Chandra Dash
Dr. Siicharan Mohanty
Sri Prasanna Kumar Das
Sri Bikram Chandra Acharya

**PUBLISHER**

Krushna Chandra Gajapati
Birth Centenary Committee, Rourkela

**COVER DESIGN**

Budhadev Basu

**PRINTER**

aarbee printers
Basanti Colony, Rkl.

aarbee printers, B. Col., Rkl-12

ଶ୍ରୀ ମଃ ଶରଣମ୍

# ମଙ୍ଗଳାଷ୍ଟକମ୍

ଶ୍ରୀଶଃ ପାତୁ ନୟପ୍ରବର୍ତ୍ତିତମତଂ ଗୀର୍ଧପୈରର୍ଚ୍ଚିତଂ
ଧୀମନ୍ତଂ ଧୃତସେବତଂ ହୃତକୃତୌ ସଂଦୀକ୍ଷିତଂ ଦୀପିତଂ,
କୀର୍ତ୍ତିଂଖ୍ୟାତ ବିକସ୍ୱରଂ ନୃପବରଂ ଶ୍ରୀ ପାରଳାଧୀଶ୍ୱରଂ
ଦେଶୋଦ୍ଧାରକମିଷ୍ଟକର୍ମ ଶିକ୍ଷରଂ ନିତ୍ୟଂ ନୁତଂ ଭୂଭରମ୍ । ୧ ।

ଆଦିତ୍ୟାଦିନବଗ୍ରହାଦିଗଧିପାଃ କୁର୍ବନ୍ତୁ ତେ ମଙ୍ଗଳଂ
ମେଷାଦ୍ୟାଃ ଶୁଭରାଶୟଃ ପ୍ରତିଦିନଂ କୁର୍ବନ୍ତୁ ତେ ମଙ୍ଗଳଂ,
ଅଶ୍ୱିନ୍ୟାଦି ଋକ୍ଷଗଣାଃ ସୁବିମଳାଃ କୁର୍ବନ୍ତୁ ତେ ମଙ୍ଗଳଂ
ବିଷ୍କୁମ୍ଭାଦି ସୁଯୋଗକାଃ ସମସ୍ତଦାଃ କୁର୍ବନ୍ତୁ ତେ ମଙ୍ଗଳମ୍ । ୨ ।

ଦେଶସ୍ୱବୋଧ ଜନନାତ୍ମକ ମୌଳିହୀରଂ
ଦେଶାର୍ତ୍ତି ଖଣ୍ଡନକରଂ ସୁବିଚାରଧୀରଂ,
ଦାତୃତ୍ୱ ବୁଦ୍ଧି ପରିନିଷ୍ଠିତ ସିଦ୍ଧି ସାରଂ
ରକ୍ଷନ୍ତୁ ଧର୍ମକୃତୟୋ ଧରଣୀଶ ବୀରମ୍ । ୩ ।

ବିଦ୍ୟା ବିଧାନ ରମଣୀୟ ବିଳାସ କେନ୍ଦ୍ରଂ
ବିଦ୍ୟାର୍ଥି ବୈଧପରିଶିକ୍ଷଣ ଧୀରଚନ୍ଦ୍ରଂ
ବନ୍ଦାରୁ ବୈଦ୍ୟ ବିଦିତଂ ନୃପକୃଷ୍ଣଚନ୍ଦ୍ରଂ
ବିଶେଶ୍ୱରୋ ଭୟହରୋଽବତୁ ମାନବେନ୍ଦ୍ରମ୍ । ୪ ।

ସତ୍କର୍ମସାଧନମତେନ ପତେଃ ଶୁଭଂ ସ୍ୟାତ୍
ଶାସ୍ତ୍ରାର୍ଥ ଧର୍ମବିନତେଃ ସୁମତେଃ ଶୁଭଂ ସ୍ୟାତ୍
ଶିଷ୍ଟାଳି ନନ୍ଦିତ ଗତେଃ ସୁକୃତେଃ ଶୁଭଂ ସ୍ୟାତ୍
ଦେବାଂଶ ଲକ୍ଷଣ ଧୃତେଃ ପ୍ରକୃତେଃ ଶୁଭଂ ସ୍ୟାତ୍ । ୫ ।

ଜୟ ଜୟ ନୃବର ଗୁଣାଳୟ ଉତ୍କଳ ଭାଗ୍ୟ ବିଧାତା,
ଜୟ ଜୟ ଅଭୟ ଜନାଶ୍ରୟ ପାଳକ ଶାସକ ନେତା,
ଜୟ ଜୟ ବିକଳ-କୃପାଳୟ ଦୁଃଖବିମୋଚନଦାତା
ଜୟ ଜୟ ସଦୟ ସଦାଶୟ ସାର୍ଥକ ଜୀବନ ପାତା । ୬ ।

ଏକାମ୍ର କାନନ ଗତା ତବପୂତ କୀର୍ତ୍ତିଃ,
ବିଦ୍ଧା ବିଶ୍ୱ ସୁବିମଳା ରଜନୀଶଦୀପ୍ତି,
ନୀଳାଦ୍ରି ବାରିଧି ଧୃତା ଶ୍ରୁତ ବୀରନୀତିଃ,
ଉଦ୍ଭେଦିରଂ ପରିମଳଂ ସୁଯଶଃ ସ୍ୱଭୂତଃ । ୭ ।

ସାଧୋସ୍ତେ ଶୁଭମସ୍ତୁ ଜୀବଶରଦାଂ ସାଗ୍ରଂ ଶତଂ ତେ ମତଃ
ସଦ୍‌ଭାବେ ଭବତାତ୍ ସଦା ବିଭୁନତଭକ୍ତଃ ସମାବର୍ତ୍ତିତାଂ
ସାଧୂନ୍ ପାହି ବୁଧାନ୍ନୟ ସ୍ୱକୃତିଭିର୍ଦେହି ସ୍ୱକୃତୈୟଧୃତଂ,
ଶ୍ରୀ ନୀଳାଚଳ ନାୟକସ୍ୟ କରୁଣା ଉଦ୍ଭେତ୍‌ଥରେ ମେ ମତିଃ । ୮ ।

□ ପଣ୍ଡିତ ଶ୍ରୀ ଗୋବିନ୍ଦ ଦାଶ ଶର୍ମା, ବିଦ୍ୱାନ୍, ଭୂତପୂର୍ବ ମହାରାଜ କଲେଜ
ସଂସ୍କୃତ ଓ ଓଡ଼ିଆ ଅଧ୍ୟାପକ, ପାରଳାଖେମୁଣ୍ଡି

ଯଜ୍ଞ ଦତ୍ତ ଶର୍ମା

ରାଜ୍ୟପାଳ, ଓଡ଼ିଶା




ରାଜଭବନ

ଭୁବନେଶ୍ୱର-୭୫୧୦୦୮

ଏପ୍ରିଲ ୧୫, ୧୯୯୨

# MESSAGE

I am glad that the Krushna Chandra Gajapati Sanskrutika Parishad, Rourkela is Celebrating the centenary of Maharaja Krushna Chandra Gajapati Narayan Deo on 26th April 1992 and a souvenir is being brought out on the occasion.

Maharaja Krushna Chandra Gajapati Narayan Deo, the patriotic prince of Parlakhemundi is the founder of modern Orissa, who dedicated his life for unification of our State and amalgamated the Oriya speaking tracts, which were vivisected and dismembered in four different provinces for about three and half centuries.

He was one of the Poineers of the Oriya movement and his patronage to literature, art, culture and music is unforgettable. As the first Premier of Orissa, he established Utkal University, Cuttack Medical College and Bidyadharpur Rice Research Institute.

Orissa is rightly proud of this noble son.

On the occasion of his birth centenary, I pay homage to this gifted soul.

Sd./-

JAGYA DATT SHARMA

aarbee printers, B.Col., Rkl-12

GOVERNOR OF
MANIPUR




RAJ BHAVAN
IMPHAL

## MESSAGE

I am happy to know that Krushna Chandra Gajapati Sanskrutika Parishad, Rourkela, is celebrating the Birth Centenary of Gajapati Krushna Chandra Dev on 26th April 1992 and bringing out a Souvenir on this occasion. He was the architect of modern Orissa in many ways. The people of Orissa should always remember his memorable contribution in getting a separate State for us in pre-Independence period. The more we remember his untiring efforts and sacrifices for upholding the cause of Orissa, the more we will derive inspiration to devote ourselves selflessly in building a prosperous Orissa of our dreams.

I wish the celebration all success.

Sd./-
( Chintamani Panigrahi

aarbee printers; B.Col., Rkl-12

**GOVERNOR**
ARUNACHAL PRADESH




RAJ BHAVAN
ITANAGAR-791111
Date-17-3-92

## ବାର୍ତ୍ତା

ପ୍ରିୟ ବନ୍ଧୁ,

କୃଷ୍ଣଚନ୍ଦ୍ର ଗଜପତିଙ୍କର ଜନ୍ମ ଶତବାର୍ଷିକୀ ରାଉରକେଲାରେ ପାଳନ କରାଯିବାର ଆୟୋଜନ ହେଉଛି ଜାଣି ଭାରି ଆନନ୍ଦିତ ହେଲି ।

ଏକ ପ୍ରତିମୂର୍ତ୍ତି ସ୍ଥାପନର ଉଦ୍ୟମ ମଧ୍ୟ ପ୍ରଶଂସନୀୟ ।

ଗଜପତିଙ୍କ ସହ ମୋର ବ୍ୟକ୍ତିଗତ ପରିଚୟ ଥିଲା । ପାରଳା ଖେମୁଣ୍ଡି ମହାରାଜା ବୋଇଲେ ଲୋକେ ଯେତେ ବୁଝିପାରିବେ, ତାଙ୍କ ନାମ କେବଳ କହିଲେ ବା ଲେଖିଲେ ବହୁଲୋକ ଧରିପାରିବେ ନାହିଁ ।

ସେ କେବଳ ପାରଳାଖେମୁଣ୍ଡିର ନ ଥିଲେ, ଥିଲେ ସାରା ଓଡ଼ିଶାର । ସାରା ଓଡ଼ିଶା ତାଙ୍କର ବନ୍ଦନା କରିବା ଉଚିତ୍ । ଓଡ଼ିଶା ରାଜ୍ୟକୁ ଏକପ୍ରକାର ପୂର୍ଣ୍ଣାଙ୍ଗ ରୂପ ଦେବାରେ ତାଙ୍କର ଉଦ୍ୟମ ଅତୁଳନୀୟ । White Paper ବ୍ରିଟିଶ ସରକାର ପାରଳାଖେମୁଣ୍ଡି ରାଜ୍ୟକୁ ଆନ୍ଧ୍ରରେ ରଖିଦେଇ ଯେଉଁ ଅନ୍ୟାୟ ଘୋଷଣା କରିଥିଲେ, ସେ ଅଟଳ ଭୀଷ୍ମପରି ମହାରାଜା ଥାଇ ସୁଦ୍ଧା ବ୍ରିଟିଶ ସରକାରର ନିଷ୍ପତ୍ତି ବଦଳାଇବାର ତୀବ୍ର ଆନ୍ଦୋଳନ ଜାରି କଲେ ଏବଂ ଶେଷରେ Joint Parliamentary Committee କାର୍ଯ୍ୟରେ ଓଡ଼ିଶାର ଦୃଢଦାବୀ ଉପସ୍ଥାପନ କରି ପାରଳାଖେମୁଣ୍ଡି ଅଞ୍ଚଳକୁ ନୂତନ ଓଡ଼ିଶା ପ୍ରଦେଶର ଅନ୍ତର୍ଭୁକ୍ତ କରାଇ ପାରିଲେ, ସେସବୁ ଏକ ଜ୍ୱଳନ୍ତ ଘଟଣା ଭାବରେ ମୋ ଆଖି ଆଗରେ ନାଚି ଉଠୁଛି । ଓଡ଼ିଆ ଜାତି ଚିରକାଳ ତାଙ୍କୁ ସ୍ମୃତିପଟରେ ବାନ୍ଧି ରଖିବ ।

ସ୍ୱାଃ—

( ସୁରେନ୍ଦ୍ର ନାଥ ଦ୍ୱିବେଦୀ )

ବିଜୁ ପଟ୍ଟନାୟକ
ମୁଖ୍ୟ ମନ୍ତ୍ରୀ
ଓଡ଼ିଶା ରାଜ୍ୟ




ଭୁବନେଶ୍ୱର
ତା ୨୧-୧୨-୧୯୯୧

# ବାର୍ତ୍ତା

ଇସ୍ପାତ ନଗରୀ ରାଉରକେଲାରେ ନୂତନ ଓଡ଼ିଶାର ଅନ୍ୟତମ ନିର୍ମାତା ସ୍ୱର୍ଗୀୟ କୃଷ୍ଣଚନ୍ଦ୍ର ଗଜପତି ଦେବଙ୍କର ଜନ୍ମ ଶତବାର୍ଷିକୀ ପାଳନପାଇଁ ଆୟୋଜନ କରାଯାଉଥିବା ଅତ୍ୟନ୍ତ ଆନନ୍ଦର ବିଷୟ ।

ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ଦିଗରେ ଗଜପତି ମହାରାଜାଙ୍କର ଅବଦାନ ଅବିସ୍ମରଣୀୟ । ୧୯୩୬ ମସିହାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ହେଲାପରେ ସେ ରାଜ୍ୟର ନେତୃତ୍ୱ ନେଇ ଓଡ଼ିଶାର ବିକାଶ ପାଇଁ ଅହରହ ଉଦ୍ୟମ କରିଥିଲେ । ତାଙ୍କର ଓଡ଼ିଆ ପ୍ରାଣତା ଓ ନିଷ୍ଠାପର ସାଧନା ପ୍ରତ୍ୟେକ ଓଡ଼ିଆ ପାଇଁ ଗର୍ବ ଓ ଗୌରବର ବିଷୟ ।

କୃଷ୍ଣଚନ୍ଦ୍ର ଗଜପତି ସାଂସ୍କୃତିକ ପରିଷଦ ଗଜପତି ମହାରାଜାଙ୍କର ସ୍ମୃତିରକ୍ଷା ପାଇଁ କରୁଥିବା ଉଦ୍ୟମର ସଫଳତା କାମନା କରୁଛି

ସ୍ୱା :—

(ବିଜୁ ପଟ୍ଟନାୟକ)

GOPI NATH GAJAPATHI

Member of Parliament

( Lok Sabha )

Berhampur Constituency

( Orissa State )




No. 90, First Floor,
South Avenue,
New Delhi - 110011
Phone : 3792288

Gajapathi Palace,
Parlakhemundi - 761200
Dist. Ganjam, Orissa
Phone : 201 & 297

11th March, 1992.

## MESSAGE

Indeed the former Maharaja of Parlakhemundi, Late Krushna Chandra Gajapathi was the noblest among noblemen and has rightly been described as the founder of Orissa State. This patriotic Prince of Parlakhemundi dedicated his life for the unification of Orissa and amalgamated the Oriya -- speaking tracts, which were dismembered in four different Provinces for over three centuries.

Mere words cannot describe the far—sightedness, philanthropy and epic sacrifices of Shri Krushna Chandra Gajapathi. As the pioneer of the Oriya Movement, he spent in millions, from his own royal treasury for the cause of Orissa and its development. He put forth the demands for a separate Province of Orissa before the Two Round Table Conferences of the British Government in 1930 and 1932. He remained a dejected person with his retinue in London's Dorchester Hotel, when his efforts took time to achieve the goal. However, in his dream one night, his Istadevi, Goddess Manikeswari assured him of ultimate success. Likewise he did and truly enough, the Oriyas got a separate Province in the year 1936 !

Shri Krushna Chandra Gajapathi continued to provide multi-dimentional leadership to Orissa and was unanimously elected the First Premier of Orissa. He established the Utkal University, Cuttack Medical College and the Rice Research Institute at Cuttack, which is one of the

biggest of its kind in Asia. He set up many Schools, Colleges, Industrial Institutions, Modern Farms and Irrigational Projects. Scholarships were awarded to thousands of poor and meritorious students for higher studies in Humanities Science, Agriculture, Medicine, Engineering, etc. .His patronage to Oriya literature, art, music, sports and culture is unforgettable. He also extended the narrow gauge Light Railway from Parlakhemundi to Gunupur, for providing the basic travel service to the people and the development of the region predominated by the adivasis, harijans and the down-trodden.

He was the Honorary Captain in the First world war, Member of the Royal Agriculture Commission and the Madras Legislative Assembly. The Honorary LL.D. by the Utkal University and the prestigious K.C.I.E. were also conferred on him. He was a Member of the Constituent Assembly of India as well. His contributions to horse racing and horse breeding in India are notable. He also made generous donations to the Pasteur Research Institute, Coonoor, the Coimbatore Agricultural University and the Indian Red Cross Society. His name adorned several Boards of corporate institutions. If Orissa today is a viable State in the Indian Union, it is the singular credit of Shri Krushna Chandra Gajapati. No wonder that 30 million people of present Orissa, have deep emotional attachment with the former Maharaja Krushna Chandra Gajapathi. Thus his name will live on, to inspire the future generations for ever and ever.

It is gratifying to note that the Steel City of Rourkela will be celebrating the unique occasion of my late grandfather's Birth Centenary on the 26th April, 1992. This is a befitting gesture to one of the Founder Directors of H.S.L., presently styled as SAIL. On this auspicious occasion, I extend my hearty greetings to the Organisers and wish the Celebrations every success.

Sd/-

GOPI NATH GAJAPATHI

aarbee printers, B.Col., Rkl-12

**Shri Sarat Kumar Kar**

MINISTER

SPORTS, CULTURE, YOUTH
SERVICES AND INFORMATION &
PUBLIC RELATIONS, ORISSA



Phone : Off. : 400600
PBX 357
RAX. 23
RES. 405923
D. O No.......... .../MSCYS/I&PR
BHUBANESWAR

DATE.................................199

# MESSAGE

I am very glad to learn that Krushna chandra Gajapati Birth Centenary Celebration Committee, Rourkela is going to celebrate the Birth ceremony of Gajapati Krushna Chandra Dev the creator of Orissa Province. I Convey my thanks to the office bearer of the Celebration Committee and wish all success of this praise worthy endeavour.

Sd./-
( Sarat Kumar Kar )

**Shri Chaitanya Prasad Majhi**
MINISTER
EDUCATION & YOUTH SERVICES(EDUCATION)
ORISSA



TELEPHONE No. 400451 (Off.)
404741 (Res.)
663 (PABX)

No................/MEYS (Edn.)
BHUBANESWAR

Date..............................199

# MESSAGE

I am glad to know that the Birth Centenary of late Maharaja Krushna Chandra Gajapati Dev is going to be celebrated on 26. 4. 92 in a most befitting manner. The Celebration Committee have proposed to install a full sized bronze statue of Late Gajapati and also to publish a colourful Souvenir to commemorate the historic occasion.

Gajapati krushna Chandra Dev was one of the architects of modern Orissa and no amount of tribute paid to him can commensurate with his sense of dedication and his love for the people of Orissa. May we all endeavour to emulate the life and work of this outstanding personality.

I send my warm felicitation to all those associated with the Centenary Celebration and wish all success of Souvenir.

Sd./
C. P. MAJHI

SHRI SURENDRA NATH NAIK

MINISTER

REVENUE, ORISSA



PHONE No. Office 402400
Sectt PABX 375
Res. 403729

No........ ............................/MR

BHUBANESWAR

The..... .........1992

# MESSAGE

It gives me immense pleasure to know that the Birth Centenary of Gajapati Krushna Chandra Dev is being observed with pump and ceremony throughout the state in April, 1992 especially by the centenary Celebration Committee, Rourkela.

When we utter the name of Gajapati and think of his dauntless efforts and sacrifies for the unification of Orissa a thrilling sensation sweeps in our body and mind. Born in a royal family with silver spoon in mouth it is very rare in the history of mankind to divert ones activities and attitude towards the elevation of down trodden mass. But this had happened on the part of Gajapati, He was a ruler, a politician, tough freedom fighter, pious, social reformist, an unquestioned leader. All the noble qualities were accumulated in him.

Now it is our foremost duty to tread the path of noble deeds which the Gajapati left for us. I wish the centenary celebration to be a grand success and the magazine will be a nice one.

Sd./-

( S. N. Naik )

3-1-92

**SHRI SURYA NARAYAN PATRA**

MINISTER OF STATE

FISHERIES AND ANIMAL HUSBANDRY

ORISSA



BHUBANESWAR

Date.......................199

# MESSAGE

I am very much glad to know that Krushna Chandra Gajapati Centenary Celebration Committee, Rourkela is going to celebrate the Birth Centenary of Gajapati Krushna Chandra Dev and on this occasion, a prestigious colourful Souvenir is going to be published which will be released on 26-4-1992.

Gajapati Krushna Chandra Dev was not only an architecture of modern Orissa, but also was a great freedom fighter and an administrator. The people of Orissa will never forget nim for his contribution and sacrifice towards unification of Orissa and its culture, his participation and active leadership towards freedom movement in India will always be remembered in our mind.

I wish the endeavour a grand success.

Sd./-

(Surya Narayan Patra)

19-12-91

ଶ୍ରୀ ପ୍ରାଣକୃଷ୍ଣ ପଟ୍ଟନାୟକ
ଜିଲ୍ଲାପାଳ, ସୁନ୍ଦରଗଡ଼

ତା ୭-୪-୯୨

# ବାର୍ତ୍ତା

ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଜନ୍ମ ଶତବାର୍ଷିକୀ ପାଳନ ନିମିତ୍ତ କୃଷ୍ଣଚନ୍ଦ୍ର ଗଜପତି ସାଂସ୍କୃତିକ ପରିଷଦର ଉଦ୍ୟମ ଅଭିନନ୍ଦନୀୟ । ସ୍ୱତନ୍ତ୍ର ଓଡ଼ିଶା ଗଠନ ଯେଉଁ ବରପୁତ୍ର ମାନଙ୍କର ତ୍ୟାଗ, ନିଷ୍ଠା ଏବଂ ଅଦମ୍ୟ ଚେଷ୍ଟା ଦ୍ୱାରା ସମ୍ଭବ ହେଲା କୃଷ୍ଣଚନ୍ଦ୍ର ଗଜପତି ସେମାନଙ୍କ ମଧ୍ୟରେ ଅନ୍ୟତମ । ସମଗ୍ର ଦେଶରେ ବିଚ୍ଛିନ୍ନତା ମନୋଭାବ ପ୍ରସାରିତ ହେଉଥିବା ବେଳେ ଏହି ମହାନ୍ ବ୍ୟକ୍ତିଙ୍କର ସ୍ମୃତିଗୃରଣ ଓଡ଼ିଆ ଜାତିକୁ ସଙ୍ଗଠିତ କରିବା ସଙ୍ଗେ ସଙ୍ଗେ ଓଡ଼ିଆର ସ୍ୱାଭିମାନ ରଖିପାରିବ ।

ଉଦ୍ୟୋକ୍ତା ମାନଙ୍କର ଏହି ମହାନ୍ କାର୍ଯ୍ୟରେ ସମ୍ପୂର୍ଣ୍ଣ ସଫଳତା ଆଶା କରୁଛି ।

ସ୍ୱା :—

( ପ୍ରାଣକୃଷ୍ଣ ପଟ୍ଟନାୟକ )

# ଓଡ଼ିଆ ବିଭାଗ



# ENGLISH SECTION

# କୃଷ୍ଣଚନ୍ଦ୍ର ଗଜପତି ଶତବାର୍ଷିକୀ ଜୟନ୍ତୀ କମିଟି
## ରାଉରକେଲା
## ୧୯୯୨

### ଆନୁକୂଲ୍ୟରେ ଆୟୋଜିତ ରାଜ୍ୟସ୍ତରୀୟ ପ୍ରବନ୍ଧ ପ୍ରତିଯୋଗିତାର ଫଳାଫଳ

**- ଇଂରାଜୀ ପ୍ରବନ୍ଧ -**

ଶୀର୍ଷକ KRUSHNA CHANDRA GAJAPATI AND ORIYA NATIONALISM

ପ୍ରଥମ ଶ୍ରୀ ପାର୍ଥ ସାରଥି ପ୍ରସାଦ ଷଡଙ୍ଗୀ, + ୩ କଳା ରେଭେନ୍‌ସା କଲେଜ, କଟକ
( ସ୍ୱର୍ଣ୍ଣ ପଦକ ବିଜେତା )

ଦ୍ୱିତୀୟ କୁମାରୀ ମମତା ପ୍ରଧାନ, + ୩ ପ୍ରଥମ ବାର୍ଷିକ କଳା, ଭଗବତୀ କଲେଜ, କୋଣାର୍କ
( ରୌପ୍ୟ ପଦକ ବିଜେତା )

**- ଓଡ଼ିଆ ପ୍ରବନ୍ଧ -**

ଶୀର୍ଷକ ଆଧୁନିକ ଓଡ଼ିଶାର ସ୍ରଷ୍ଟା: କୃଷ୍ଣଚନ୍ଦ୍ର ଗଜପତି

ପ୍ରଥମ ଶ୍ରୀ ସନ୍ତୋଷ କୁମାର ମିଶ୍ର, ଦଶମ ଶ୍ରେଣୀ, ସରକାରୀ ବାଳକ ଉଚ୍ଚ ବିଦ୍ୟାଳୟ
ଇଉନିଟ-୧, ଭୁବନେଶ୍ୱର
( ସ୍ୱର୍ଣ୍ଣପଦକ ବିଜେତା )

ଦ୍ୱିତୀୟ ଶ୍ରୀ ସୁନୀଲ କୁମାର ପାଣିଗ୍ରାହୀ, ଅଷ୍ଟମ ଶ୍ରେଣୀ (ଗ)
କ୍ୟୁଇନ ଅଫ୍ ମିଶନ୍ ହାଇସ୍କୁଲ, ବ୍ରହ୍ମପୁର ( ଗଞ୍ଜାମ )
( ରୌପ୍ୟ ପଦକ ବିଜେତା )

[ ଶତବାର୍ଷିକୀ କମିଟି ତରଫରୁ ବିଜେତା ପ୍ରତିଯୋଗୀଙ୍କୁ ଅଭିନନ୍ଦନ ଓ ସମସ୍ତ ଅଂଶଗ୍ରହଣକାରୀ ପ୍ରତିଯୋଗୀଙ୍କୁ ସାଧୁବାଦ ଜ୍ଞାପନ କରାଯାଉଛି । ]

# କୃଷ୍ଣଚନ୍ଦ୍ର ଗଜପତି ଜନ୍ମ ଶତବାର୍ଷିକୀ ଜୟନ୍ତୀ

## ରାଉରକେଲା

ତାରିଖ - ୨୭.୪.୧୯୯୨

**ଐତିହାସିକ ସନ୍ଧ୍ୟାର ବରେଣ୍ୟ ବ୍ୟକ୍ତିତ୍ୱ ମଣ୍ଡଳୀ**

**ମୁଖ୍ୟ ଅତିଥି:**

**ଡକ୍ଟର୍ ପ୍ରସନ୍ନ କୁମାର ପାଟଶାଣୀ**

ମାନ୍ୟବର ପେନ୍‌ସନ୍ ଓ ଅଭିଯୋଗ ମନ୍ତ୍ରୀ, ଓଡ଼ିଶା

**ମୁଖ୍ୟ ବକ୍ତା :**

**ପ୍ରଫେସର ଧୀରେନ୍ଦ୍ର ନାଥ ଶତପଥୀ**

ଓଡ଼ିଆ ବିଭାଗ ମୁଖ୍ୟ

ସରକାରୀ ମହାବିଦ୍ୟାଳୟ, ରାଉରକେଲା

**ସଭାପତି :**

**ଶ୍ରୀ ଅସୀତ୍ କୁମାର ତ୍ରିପାଠୀ,** ଆଇ.ଏ.ଏସ୍

ଅତିରିକ୍ତ ଜିଲ୍ଲାପାଳ, ରାଉରକେଲା

ଓ ଭାଇସ୍ ଚେୟାରମ୍ୟାନ୍, ଗଜପତି ଶତବାର୍ଷିକୀ ଜୟନ୍ତୀ କମିଟି, ରାଉରକେଲା

# କୃତଜ୍ଞତା ସ୍ୱୀକାର

ଏହି ଶତବାର୍ଷିକୀ ସ୍ମରଣିକା ପ୍ରକାଶନ ନିମନ୍ତେ ଯେଉଁ ଲେଖକଗଣ, ବିଜ୍ଞାପନ ଦାତା, ବିଭିନ୍ନ ଅନୁଷ୍ଠାନ, ବିଭିନ୍ନ ସଂସ୍କୃତି ସଚେତନ ଉଦାରମନା ବ୍ୟକ୍ତି ବିଶେଷ, ବଦାନ୍ୟ ଦାତାବୃନ୍ଦ, ଶୁଭେଚ୍ଛୁ ବର୍ଗ, ଆର୍‌.ବୀ ପ୍ରିଣ୍ଟର୍ସ, ରାଉରକେଲା ଓ ଓଡ଼ିଶା ସରକାର ତଥା ରାଉରକେଲା ଇସ୍ପାତ କାରଖାନାର କର୍ମକର୍ତ୍ତାଗଣ ଆମ୍ଭମାନଙ୍କୁ ବହୁ ଭାବରେ ସହଯୋଗ, ସାହାଯ୍ୟ ଓ ପ୍ରୋତ୍ସାହିତ କରିଅଛନ୍ତି । ଏ ଅବସରରେ ସମସ୍ତଙ୍କୁ ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଅଛୁ । ସମୟାଭାବ ହେତୁ କେତେକ ଉପାଦେୟ ଲେଖା 'ସ୍ମରଣିକା'ରେ ଛପାଯାଇ ପାରିନଥିବାରୁ ଗଭୀର ଗ୍ଳାନିର ସହ ଲେଖକମାନଙ୍କ ପାଖରୁ ସଦୟ କ୍ଷମା ଚାହୁଁଛୁ ।

—ସଂପାଦକ ଓ ପ୍ରକାଶକ

ସଂପାଦକଙ୍କ ପୃଷ୍ଠା

# ପାରଳା ଗଜପତି ଶତବାର୍ଷିକୀରେ ସମୀକ୍ଷା ଓ ସଂକଳ୍ପ ॥

□ ଡଃ ଶରତ ଚନ୍ଦ୍ର ନାୟକ

ଆଈମା ମୁହଁର ଲୋକ କାହାଣୀର ରାଜକୁମାର ପରି କମନୀୟ କାନ୍ତି । ଚମ୍ପକଗୌର ସୁଦୀର୍ଘ ସୁଠାମ ବପୁ । ମୁଖ ମଣ୍ଡଳ ଚିର ପ୍ରଶାନ୍ତ ତଥା ଆତ୍ମପ୍ରତ୍ୟୟର ଏକ ଅନିର୍ବଚନୀୟ ଦୀପ୍ତିରେ ଭାସ୍ୱର । ଦୀପ୍ତ ଚକ୍ଷୁ । ଦୃଷ୍ଟି ନିର୍ଲିପ୍ତ । ମେଳାପୀ ଅଥଚ ଭାବ ଗମ୍ଭୀର । ସ୍ପଷ୍ଟ-ବାକ୍ । ନିର୍ଭୀକ । ଜିଦ୍‌ଖୋର ଅଥଚ ସହଜ ସରଳ । ପରମ ଦୟାବାନ ରାଜକୀୟ ଭୋଗବିଳାସ ଠାରୁ ବହୁ ଦୂରରେ ରହି ମିତବ୍ୟୟୀ, ସଂଯମୀ ଅଥଚ ଅଫୁରନ୍ତ ଦାନବୀର !

ଏ ବଳିଷ୍ଠ ଓଜସ୍ୱଳ ରାଜକୀୟ ବ୍ୟକ୍ତିତ୍ୱର ଅନ୍ତରରେ କି ଅତଳ ସ୍ପର୍ଶୀ ଅନବଦ୍ୟ ଓଡ଼ିଆ ପ୍ରୀତି । ବିଚ୍ଛିନ୍ନ ଉତ୍କଳର ଏକତ୍ରୀକରଣ ପାଇଁ କି ଉଷ୍ଣ ଆର୍ଦ୍ର ଆବେଗ, ଆନ୍ତରିକ ଆକୁତି ତଥା କି ଅନବରତ ଅବିରାମ ଅଭିନିବେଶ ଅନ୍ତହୀନ ପ୍ରାଣାନ୍ତକ ପ୍ରଚେଷ୍ଟା

ଆଜି ଉତ୍କଳର ମାନଚିତ୍ର ଉପରେ ଦୃଷ୍ଟି ନିକ୍ଷେପ କଲା ବେଳେ ସେହି ରାଜାଙ୍କ କଥା ବେଶୀ ମନକୁ ଛୁଏଁ । ସେ ହେଉଛନ୍ତି ପାରଳାର ରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ । ଏ ଜାତିର ଅବିସ୍ମରଣୀୟ ଚିର ନମସ୍ୟ ତୁଙ୍ଗ ପୁରୁଷ ।

ପାରଳା ସିଂହାସନ ଆରୋହଣ (୧୯୧୩) ପରଠାରୁ କ୍ରମାଗତ ଉତ୍କଳ ସମ୍ମିଳନୀର ଦଶମ ଅଧିବେଶନର ସଫଳ ପୃଷ୍ଠପୋଷକତା, ଫିଲିପ୍‌—ଡଫ୍ କମିଟି ସମ୍ମୁଖରେ ଭାଷାଭିତ୍ତିରେ ଓଡ଼ିଆ ଭାଷାଭାଷୀଙ୍କ ନିମନ୍ତେ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ ପାଇଁ ଦାବୀ ଉତ୍‌ଥାପନ, ସାଇମନ କମିସନ୍‌କୁ ଖଣ୍ଡବିଖଣ୍ଡିତ ଓଡ଼ିଆ ଜାତିର ସମସ୍ୟା ସମ୍ପର୍କରେ ସଚେତନ କରାଇବାର ଦୂରଦୃଷ୍ଟି ଓ ତତ୍‌ପରତା, ଗୋଲ ଟେବୁଲ ବୈଠକରେ ବିଭିନ୍ନ ପ୍ରାଦେଶିକ ସରକାର ଅଧୀନରେ ବିକ୍ଷିପ୍ତ ଭାବେ ରହି ନାମକୁ ମାତ୍ର ପ୍ରଶାସିତ ବାସ୍ତବତଃ ଉପେକ୍ଷିତ ଓଡ଼ିଆ ଭାଷାଭାଷୀଙ୍କ ଅନ୍ତର୍ଦାହ ସମ୍ପର୍କରେ ମର୍ମସ୍ପର୍ଶୀ ଐତିହାସିକ ଉଦ୍‌ବୋଧନ, ଓଡନେଲ କମିଟି ଉପରେ ଓଡ଼ିଶା ପ୍ରଦେଶ ଗଠନର ସୀମାନେଇ ମତ ପ୍ରଦାନ— ଏ ସମସ୍ତ ପ୍ରଚେଷ୍ଟାରୁ ପାରଳା ଗଜପତିଙ୍କ ଉତ୍କଳ ପ୍ରାଣତାର ଗଭୀରତା ସହଜରେ ଅନୁମେୟ ।

ଦୁର୍ଯ୍ୟୋଗକୁ ଗଜପତିଙ୍କ ସମସ୍ତ ପ୍ରଚେଷ୍ଟା ସତ୍ତ୍ୱେ ପାରଳାଖେମଣ୍ଡି ଜମିଦାରୀକୁ ଓଡ଼ିଶାରେ ଅନ୍ତର୍ଭୁକ୍ତ ନ କରିବା ପାଇଁ ଓଡ଼ନେଲ କମିଟିର ଅଧ୍ୟକ୍ଷ ସୁପାରିଶ କରିଥିଲେ । ପୁଣି ୧୯୩୩ ଖ୍ରୀ; ରେ ବ୍ରିଟିଶ ସରକାରଙ୍କ ଶ୍ୱେତପତ୍ରରେ ଘୋଷିତ ନୂତନ ଓଡ଼ିଶା ପ୍ରଦେଶରେ ପାରଳାଖେମଣ୍ଡି ଓ ଜୟପୁର ଅନ୍ତର୍ଭୁକ୍ତ ନ ଥିଲା । କୃଷ୍ଣଚନ୍ଦ୍ର ଗଜପତି ଏଥିରେ ମର୍ମାହତ ହେବା ସ୍ୱାଭାବିକ । ତେବେ ଗଜପ

ଷ୍ଟାବ୍ଦରେ ଲଣ୍ଡନ ଯାତ୍ରାକରି ଜଏଣ୍ଟ ସିଲେକ୍ଟ କମିଟି ସମ୍ମୁଖରେ ପାରଳାଖେମୁଣ୍ଡି ଓ ଜୟପୁରକୁ ଓଡ଼ିଶାରେ ଅନ୍ତର୍ଭୁକ୍ତ କରିବା ପାଇଁ ଦୃଢ଼ ଦାବୀ ଉପସ୍ଥାପିତ କରିଥିଲେ । ଗଜପତିଙ୍କ ଅବ୍ୟାହତ ପ୍ରଚେଷ୍ଟା ଓ ଆନ୍ତରିକ ନିଷ୍ଠା ଫଳରେ ପରିଶେଷରେ ଜୟପୁର ସାଙ୍ଗକୁ ପାରଳା ଜମିଦାରୀର ଏକ ତୃତୀୟାଂଶ ଓ ପାରଳାଖେମୁଣ୍ଡି ସହର ଓଡ଼ିଶାରେ ଅନ୍ତର୍ଭୁକ୍ତ କରାଯିବାର ନିଷ୍ପତ୍ତି ନିଆଗଲା ।

ଗଜପତିଙ୍କ ସ୍ୱପ୍ନ ଆଂଶିକ ସାର୍ଥକ ହେଲା । ୧୯୩୬ ଅପ୍ରେଲ ପହିଲାରେ କଟକ, ପୁରୀ, ବାଲେଶ୍ୱର, ଗଞ୍ଜାମ ଓ କୋରାପୁଟକୁ ନେଇ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଘୋଷିତ ହେଲା ।

ଗଜପତି ଏକାଧାରରେ ରାଜ୍ୟପାଳକ, ଜାତି ସଂଗଠକ, ସାହିତ୍ୟ— ସଂସ୍କୃତିର ପୃଷ୍ଠପୋଷକ ଏବଂ ଦାନବୀର ଥିଲେ । ସେ ଅତ୍ୟନ୍ତ ମିଷ୍ଟଭାଷୀ, ସତ୍ୟପ୍ରିୟ ଓ ନିଷ୍ଠାପର ଜନସେବକ ଥିଲେ । ତାଙ୍କ ବ୍ୟକ୍ତିତ୍ୱ ଥିଲା ଅନନ୍ୟ ଓ ଅନପେକ୍ଷ । ବିଲାତରେ ରହଣି କାଳରେ ସେ ବ୍ରିଟିଶ ସରକାରଙ୍କୁ ଦୃଢ଼ କଣ୍ଠରେ ଜଣାଇଥିଲେ "ନୂତନ ଓଡ଼ିଶା ଗଠନ ନହେଲେ ମୁଁ ଓଡ଼ିଶା ଫେରିବିନାହିଁ ।"

ଓଡ଼ିଶା ପ୍ରଦେଶ ଗଠନ ପରେ ଗଜପତି ଦୁଇଥର ପ୍ରଧାନମନ୍ତ୍ରୀ ହୋଇ ଉତ୍କଳର ଅନେକ ଅଭିବୃଦ୍ଧି ସାଧନ କରିଥିଲେ । ତାଙ୍କର ମନ୍ତ୍ରୀତ୍ୱ କାଳରେ ଓଡ଼ିଶାରେ ଉଚ୍ଚଶିକ୍ଷାର ପ୍ରସାର ଘଟିଥିଲା । ଓଡ଼ିଶାର ପ୍ରଥମ ବିଶ୍ୱବିଦ୍ୟାଳୟ ଓ ପ୍ରଥମ ମେଡ଼ିକାଲ କଲେଜର ସେ ହିଁ ଥିଲେ ପ୍ରତିଷ୍ଠାତା । ସେ ପ୍ରଧାନମନ୍ତ୍ରୀ ଥିଲାବେଳେ ନିଜର ମାସିକ ଦରମା ଓ ଗସ୍ତ ଖର୍ଚ୍ଚ ସବୁ ଉତ୍କଳ ବିଶ୍ୱବିଦ୍ୟାଳୟକୁ ଦାନ କରିଥିଲେ ।

ପାରଳା ରାଜା ଅତ୍ୟନ୍ତ କ୍ଷିଦଖୋର ତଥା ପ୍ରବଳ ଆତ୍ମ-ବିଶ୍ୱାସୀ ଥିଲେ । ସେ ଯାହା ଭାବୁଥିଲେ, ଯେତେ କଠିନ ହେଉ-ପଛେ ପାଳନ ପ୍ରୟାସୀ ଥିଲେ । ତାଙ୍କର ବିରାଟ ବ୍ୟକ୍ତିତ୍ୱ, ପ୍ରଗାଢ଼ ନିଷ୍ଠା, ବିଚକ୍ଷଣ ଧୀମନ୍ତା, ଅକ୍ଳାନ୍ତ ନିର୍ଭୀକତା, ସୁଦକ୍ଷ ବ୍ୟବସ୍ଥାପକତା ଓ ଉଦାର ସାହିତ୍ୟ ପୃଷ୍ଠପୋଷକତା ବାସ୍ତବରେ ଅତୁଳନୀୟ ।

ପ୍ରଥମ ଗୋଲଟେବୁଲ ବୈଠକରେ ଗଜପତିଙ୍କ ଆବେଗ ଋଦ୍ଧ ଅକାଟ୍ୟ ବୁଦ୍ଧିଦୀପ୍ତ ଐତିହାସିକ ଭାଷଣ ଫଳରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନର ଅନୁକୂଳ ସୂଚନା ପାଇବାମାତ୍ରେ ଦେବାନ ବାହାଦୂର କୃଷ୍ଣ ମହାପାତ୍ର କହି ପକାଇଥିଲେ – "ଅତୀତରେ ଓଡ଼ିଆ ନୃପତିମାନଙ୍କ ଦ୍ୱାରା ଉତ୍ତରରେ ଓ ଦକ୍ଷିଣରେ ବହୁଯୁଦ୍ଧ ସଂଘଟିତ ହୋଇଛି । କିନ୍ତୁ ଓଡ଼ିଆମାନଙ୍କ ସେନାଧ୍ୟକ୍ଷ ରୂପେ ପାରଳାଖେମୁଣ୍ଡିର ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଦ୍ୱାରା ଲଣ୍ଡନର ଥେମସ୍ ନଦୀ ତୀରରେ ଏହି ଯେଉଁ ଅନ୍ତିମ ଯୁଦ୍ଧ ହେଲା, ସେଥିରେ ଆମ୍ଭେ ଜୟଲାଭ କଲୁଁ ।"

କୃଷ୍ଣଚନ୍ଦ୍ର ଗଜପତିଙ୍କ ସମ୍ପର୍କରେ ଡ଼ କୁଞ୍ଜବିହାରୀ ଦାଶଙ୍କ ଅଭିମତ ପ୍ରଣିଧାନ ଯୋଗ୍ୟ— "ମଧୁସୂଦନ, ଗୋପବନ୍ଧୁ ଓ ମହାରାଜା କୃଷ୍ଣଚନ୍ଦ୍ର ଦେଶପ୍ରେମୀ ଭାବରେ କେହି କାହାଠାରୁ ଊଣା ନୁହନ୍ତି । ମଧୁସୂଦନ ମନନଶୀଳ, ଗୋପବନ୍ଧୁ ହୃଦୟବନ୍ତ । ମହାରାଜା କୃଷ୍ଣଚନ୍ଦ୍ର ଉଭୟ ମନନଶୀଳ ଓ ହୃଦୟବାନ୍ ।"

ବାସ୍ତବରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ଜଣେ ଅନନ୍ୟ ଐତିହାସିକ ଜନନାୟକ ହେଉଛନ୍ତି ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ । ଉତ୍କଳ ପ୍ରଦେଶ ସୃଷ୍ଟିରେ ତାଙ୍କର ଆର୍ଥିକ ଓ ନୈତିକ ସହଯୋଗ ଏବଂ ପରିଶେଷରେ ତାଙ୍କର ବ୍ୟକ୍ତିଗତ ଅକ୍ଳାନ୍ତ ତତ୍ପରତାରେ ଜୟପୁର ଓ ପାରଳାଖେମୁଣ୍ଡିର ଓଡ଼ିଶା ସହ ମିଶ୍ରଣ ଆଜି ଏହି ଓଡ଼ିଆ ପ୍ରାଣ ମହାନ୍ ଆତ୍ମାଟିକୁ ଐତିହାସିକ ବ୍ୟକ୍ତିତ୍ୱରେ ପରିଣତ କରିଛି । ଡ଼କ୍ଟର ହରେକୃଷ୍ଣ ମହତାବ ଯଥାର୍ଥରେ କହିଛନ୍ତି- "His contribution to the mankind of Orissa as a separate province is certainly very great... He threw his heart and soul into the movenent for a separate province."

ପାରଳାର କୃଷ୍ଣଚନ୍ଦ୍ର ଗଜପତି ନଥିଲେ ଆଜି ହୁଏତ ଓଡ଼ିଶାର ମାନଚିତ୍ର ଆହୁରି ବିକୃତ, ବିକଳ ଓ ବିଦୀର୍ଣ୍ଣ ରୂପଧରି ପ୍ରତିଭାତ ହେଉଥାନ୍ତା । ଏଇ ଅବିସ୍ମରଣୀୟ ଅନନ୍ୟ ମହାପୁରୁଷ ଜଣକ ଏ ଜାତିର ଉଚ୍ଚ ସାଲ୍ୟୁଟ୍ ପାଇବାର ଏକାନ୍ତ ଭାଜନ ।

ଉତ୍କଳ ପ୍ରାଣ ଗଜପତିଙ୍କ ଜନ୍ମ ଦିବସ ହେଉ ଓଡ଼ିଆର ସଙ୍କଳ୍ପର ଦିବସ, ଆତ୍ମ ବିଶ୍ୱାସର ଦିବସ । ଆତ୍ମସମୀକ୍ଷା, ଆତ୍ମ-ନିରୀକ୍ଷା ଓ ଆତ୍ମ ଜିଜ୍ଞାସାର ମୁହୂର୍ତ୍ତ ।

# KRUSHNA CHANDRA GAJAPATI BIRTH CENTENARY CELEBRATION COMMITTEE
# ROURKELA

**Chairman**

Sri Dilip Ray
Hon'ble Industry Minister, Orissa

**Vice-Chairman**

Sri A. K. Tripathy, I.A.S
A.D.M, Rourkela

**President**

Dr. Radhanath Rath
Editor, The Samaja

**Vice-Presidents**

Sri K. N. Hota
President, RSPEA

Sri D. B. Bhol
Advocate

**General Secretary**

Dr. S. C. Nayak
H.O.D. (Oriya)
Municipal College, Rourkela

**Secretary**

Sri B. C. Acharya

**Treasurer**

Sri D. Senapati

**PATRONS**

Sri N. K. Mohanty
Hon'ble Minister, Housing, Works & UD

Sri Pyari Mohan Mohapatra, I.A.S
Principal Secretary to Chief Minister, Orissa

Sri S. R. Pal, I.A.S
Secretary, Revenue

Sri Aurobindo Behera, I.A.S
Addl. Secretary to Chief Minister, Orissa

Sri Nihar Ray
Chairman, Rourkela Municipality

Sri N. K. Agarwal
Chairman, Rajagangpur Municipality

Sri Gouri Sankar Agarwal
Rourkela

**ADVISORS**

Prof Khageswar Mohapatra
Prof : Krishna Chandra Jena
Prof Gaganendra Nath Das
Dr. P. S. N. Patra
Sri Dheerendra Nath Satapathy

## STATUE COMMITTEE

Dr. Bhabagrahi Mishra, M.A, Ph.D.
Ex. Associate Prof., Hartford, America

Sri N. C. Mohapatra
Chief Personal Manager, RSP

Dr. B. M. Acharya, A.G.M, Project (Modn.)

Sri Sudhakar Padhi, Chief Supdt, PPC, RSP

Sri B. B. Mohanty, Addl. CMM, RSP

## Statue Committee

Sri P. C. Jena, O.A.S (I)
Sub-Collector, Panposh

Sri P. C. Mishra,
ITO, Rourkela

Sri Umakanta Mishra
President, Bar Association, Rourkela

Dr. Manmohan Mohanty, M.D, F.C.C.P.
18, Super Market, Uditnagar, Rourkela

Sri A. K. Behera, Supdt, DD, RSP

Sri Abhaya Kr. Das, Supdt, PED, RSP

Sri K. C. Nayak, Dy Manager (T&RM)

Sri H. N. Khadanga,
Executive P.S to M.D

Sri B. D. Sahoo, Spl. Class Contractor

Sri K. C. Sahoo, Spl. Class Contractor

Dr. Bhabagrahi Mohapatra,
President, Neelachakra, Rkl.

Sri Narayan Patra, Narayani Enterprise

Sri Prafulla Kr. Mohapatra,
D.A.V. Lane, Rourkela

Sri Gagan Das, A C. T.O, Rourkela

Sri Alekha Sahu, Vice-President
Neelachakra, Rajgangpur

Sri Bibekananda Mohanty
President, Pragati Utkal Sangha

Sri P. L. Murty,
Special Class Contractor

Sri P. C. Das, Contractor

## RECEPTION COMMITTEE

Sri B. K. Nanda,
Asst. Commissioner, Comm. Tax, Rkl.

Sri S. K. Pradhan, I.P.S,
S.P, Rourkela

Sri P. L. Nayak, O.A.S (I)
E. O, Rkl. Municipality

Sri G. N. Jena, O.A.S
E. O, N.A.C (S.T), Rkl.

Sri B. D. Mishra,
Chairman, RRIT

Sri B. B. Panda,
A.G.M, Town Service, R.S.P

Sri M. Sheshadri
Secretary, RRIT

Sri S. Pattnaik, RTO, Rkl.

Sri I. C. Samal, C.T.O, Rkl.

Sri J. Saraf, C.T.O Rkl.

Sri N. C. Routray, Vice-Chairman
Rourkela Municipality

Sri Bhaskar Sahoo,
President, Kalinga Club

Sri M. N. Das, Councillor

Sri Bhaskar Biswal, Councillor

Sri S. Routray, Bisra

Prof. J. K. Rao, H.O.D
Commerce, Municipal College

Prof. R. P. Mishra
H.O.D, Pol. Sc, Municipal College

## Reception Committee

Sri J. K. Guru, President
Panposh S D. H. B. C. S

Sri Brundaban Nayak
Pragati Utkal Sangha

Sri S. Mohapatra, Industrialist

Sri K. M. Kar

Sri Chandra Sekhar Patra
Contractor

Sri Bichitra Nanda Sahoo

## PUBLICITY COMMITTEE

Sri D. N. Pati
Representative, The Samaja

Sri R. K. Das
Correspondent, P T.I

Sri K. K. Mohanty
Representative, Prajatantra

Sri A. K. Panda
Reprcstv, Times of India

Sri R. C. Patnaik, Correspt, U.N.I

Sri Subrat Nayak
Reprcstv, Sambad

Sri Pitabasa Mishra
Editor, Utkal Mail

Sri Debajit Rath

Sr. Manager, P.R, R.S.P

Sri S. S. Das
D.I. & P.R.O, Rourkela

## SOUVENIR COMMITTEE

Dr. S. C. Nayak

Dr. K. C. Das

Dr. S. C. Mohanty

Sri P. K. Das

Sri B. C. Acharya

## CO-ORDINATION COMMITTEE

Sri N. Panigrahi
Rtd Asst. Mgr, RSP

Sri P K. Das
President, RSP Employees H.B.C.S

Sri G. N. Panigrahi

Sri Harihar Pradhan

Sri S. C. Panda
RDCIS, SAIL, Rkl.

Sri B. K. Patro
RDCIS, SAIL, Rkl.

Sri B. Behera

Sri B. Guru

Source: KC Dash, Digitized by PPRACHIN, SOA

# ଓଡ଼ିଶା ସହିତ ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ଆଉ ସମ୍ଭବ କି ?

ଲକ୍ଷ୍ମୀଧର ନାୟକ

ହଁ, ଯଥାର୍ଥରେ ଓଡ଼ିଶା ସହିତ ବିଚ୍ଛିନ୍ନାଞ୍ଚଳ ମିଶ୍ରଣର ସଫଳ ରୂପାୟନ କେବଳ ଏକ ସଂଗ୍ରାମର ଅଭିଯାନ ଭିତରେ ହିଁ ସମ୍ଭବ ।

ଏଇ ପ୍ରଶ୍ନଟିର ଆଲୋଚନା ଚାଲିଛି ବିଗତ ୪୬ ବର୍ଷ ଧରି । ୧୯୩୬ରେ ଓଡ଼ିଆ ଜାତି ସ୍ୱତନ୍ତ୍ର ପ୍ରଦେଶ ପାଇଲା । ଉପକୂଳ ଅଞ୍ଚଳର ମାତ୍ର ଛଅଟି ଜିଲ୍ଲାକୁ ନେଇ ଗୋଟାଏ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ସୀମା ଚାରିପାଖେ ଘେରି ରହିଥିବା ପ୍ରଦେଶମାନଙ୍କରେ ଯୋଡ଼ି ବିସ୍ତୃତ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରିକରଣ ଦାବି ଥିଲା, ବ୍ରିଟିଶ୍ ସରକାର ତାହା ବିଚାରକୁ ନେଲା ନାହିଁ । ସେଇ ସମୟରୁ ସେ ସମସ୍ତ ଅଞ୍ଚଳ, ବିଚ୍ଛିନ୍ନ ହୋଇ ରହିଛି । ଓଡ଼ିଶା ପ୍ରଦେଶ ସହିତ ମିଶି ନାହିଁ । ମିଶିବା ଆଉ ସମ୍ଭବ କି ନୁହେଁ, ମଝିରେ ମଝିରେ ସେଇ ପ୍ରଶ୍ନ କେତେଜଣ ବୁଦ୍ଧିଜୀବି ଓଡ଼ିଆ ଜାତୀୟତାବାଦୀମାନେ ପରସ୍ପର ଭିତରେ ପଚାରି ପଚାରି ହୁଅନ୍ତି ।

'ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ପାଇଁ ଦାବି କରିଥିଲେ ମି. ଦାସ ଭାଇସ୍‌ରାୟ ଲର୍ଡ କର୍ଜନଙ୍କ ପାଖରେ ୧୯୦୧ରେ । ଇଂରେଜ ସରକାରଙ୍କ ସର୍ବୋଚ୍ଚ ପ୍ରତିନିଧିଙ୍କୁ କେବଳ ଏକ 'ଦାବି' ପତ୍ର ଦେଇ, କିଛି ଆଲୋଚନା କରି ମଧୁବାବୁ ଫେରି ଆସିନଥିଲେ । ସମଗ୍ର ଓଡ଼ିଆ ଜାତିକୁ ଆହ୍ୱାନ ଦେଇଥିଲେ ସ୍ୱତନ୍ତ୍ର ପ୍ରଦେଶ ହାସଲ କରିବା ଲାଗି, ବଜ୍ର ନିର୍ଘୋଷ କଣ୍ଠରେ । ଜାତୀୟ ମଣ୍ଡପରେ ଏକଜୁଟ ହୋଇ, ବିଚାର ବିମର୍ଷ କରି 'ଅଭିଯାନ'ର 'ଷ୍ଟ୍ରାଟେଜି' କ'ଣ ହେବ, ତାହା ଠିକ୍ କରିବା ପାଇଁ ନିର୍ଦ୍ଦେଶ ଦେଇଥିଲେ ।

୧୮୯୨ରେ ଗୌରୀଶଙ୍କର ରାୟ 'ଉତ୍କଳ ସଭା' ଅନୁଷ୍ଠାନ ନିଜ ସମ୍ପାଦନାରେ ଗଢ଼ିଥିଲେ । ଏହାରି ପକ୍ଷରୁ ୨୦-୬-୧୮୯୫ରେ ତତ୍କାଳୀନ ବଡ଼ଲାଟ ଏଲ୍‌ଜିନ୍‌ଙ୍କୁ ଏକ ସ୍ମାରକ ପତ୍ର ଦିଆଯାଇଥିଲା ବିଭିନ୍ନ ପ୍ରଦେଶରେ ଥିବା ସମସ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ର କରି ଓଡ଼ିଆ ଜାତି ପାଇଁ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରାଯାଉ ।

୧୯୦୩ରେ ଗଞ୍ଜାମରେ ଅନୁଷ୍ଠିତ ଏକ ସଭାରେ ମଧୁବାବୁ ଓଜସ୍ୱିନୀ ଭାଷଣ ଦେଇ କହିଥିଲେ ' ଦେଶ ମିଶ୍ରଣ ଓଡ଼ିଆ ଜାତି ପକ୍ଷରେ ଏକ ଗୁରୁତର ସମସ୍ୟା । ଓଡ଼ିଆମାନେ ବିଭିନ୍ନ ସରକାରଙ୍କ ଅଧୀନରେ ରହି ନିଜର ଭାଷା ଓ ସ୍ୱତନ୍ତ୍ର ସତ୍ତା ହରାଇଲେଣି । ଏମାନେ ଏକ ଶାସନାଧୀନ ହେବା ଉଚିତ ।

ଏଇ ଗଞ୍ଜାମରେ, ଉତ୍କଳ ସଭା ଅନୁଷ୍ଠାନକୁ "ଉତ୍କଳ ସମ୍ମେଳନୀ" ରୂପ ଦେବା ପାଇଁ ପ୍ରସ୍ତାବ ଆଗତ କରିଥିଲେ ମିଷ୍ଟର ଦାସ । ସେ କହିଥିଲେ "ଏଇ ସଭାରେ ପ୍ରାକୃତିକ ଓଡ଼ିଶାର ସବୁ ଅଞ୍ଚଳରୁ ପ୍ରତିନିଧି ଆସିଛନ୍ତି । ତେଣୁ ଏଣିକି ଏହା 'ଉତ୍କଳ ସମ୍ମେଳନୀ' ବୋଲାଇବ ।" ସମସ୍ତଙ୍କ ମନକୁ ଏକଥା ପାଇଥିଲା । ବସ୍ତୁତଃ ଗଞ୍ଜାମ ସମ୍ମେଳନୀ ହିଁ ଥିଲା "ଉତ୍କଳ ସମ୍ମେଳନୀ"ର ଜନ୍ମଦାତ୍ରୀ ।

ଏ' ଘଟଣା ଆଜକୁ ଠିକ୍ ଶହେ ବର୍ଷ ତଳର ଏକ ଜାତୀୟ ଜାଗରଣର କଥା । ୧୯୦୩ ମସିହାରୁ ୧୯୧୮ ପର୍ଯ୍ୟନ୍ତ ଦୀର୍ଘ ପନ୍ଦର ବର୍ଷ ଧରି ନିରବଚ୍ଛିନ୍ନ ଭାବେ ଉତ୍କଳ ସମ୍ମିଳନୀ ପ୍ରତିଷ୍ଠାନକୁ ଓଡ଼ିଆ ଜାତିର ଏକମାତ୍ର ଜାତୀୟ ଅନୁଷ୍ଠାନ ରୂପେ ଗଢ଼ି ତୋଳିବାରେ ମଧୁବାବୁ କି କଷ୍ଟ ସ୍ୱୀକାର କରିଥିଲେ ତାହା କାହାରିକୁ ଅଜଣା ନାହିଁ ।

୧୯୧୩ରେ ଉତ୍କଳ ସମ୍ମିଳନୀର ପୁରୀ ଅଧିବେଶନରେ ମଧୁବାବୁଙ୍କ ଡାଇନାମିକ୍ ନେତୃତ୍ୱକୁ ପ୍ରଶଂସା କରି ପୁରୀଂଗୀ ରାଜା କହିଥିଲେ ଉତ୍କଳର ସର୍ବ ପ୍ରଧାନ ନେତା ହେଉଛନ୍ତି ମଧୁସୂଦନ ଦାସ ସି ଆଇ.ଇ. । ଏ ସଭାରେ ସେ ଆଜି ଅଧ୍ୟକ୍ଷତା କରନ୍ତୁ । ବର୍ତ୍ତମାନ ପରିସ୍ଥିତିରେ ଓଡ଼ିଆ ଜାତି ଘୋର ସଂକଟ ଭିତର ଦେଇ ଗତି କରୁଛି, ଯେଉଁଥିପାଇଁ ବିଚକ୍ଷଣ ବ୍ୟକ୍ତିଙ୍କ ସୁପରାମର୍ଶ ଏକାନ୍ତ ପ୍ରୟୋଜନ । "ଉତ୍କଳ ସମ୍ମିଳନୀ" ମିଷ୍ଟର ଦାସଙ୍କ ଚିନ୍ତାର ଫଳ । ସେ ଆମକୁ ଦିଗ୍ ଦର୍ଶନ ଦିଅନ୍ତୁ ।

ଏ ପ୍ରସ୍ତାବକୁ ସମର୍ଥନ କରିବା ପାଇଁ ଆଗେଇ ଯାଇଥିଲେ ପଣ୍ଡିତ ଗୋପବନ୍ଧୁ । ସତ୍ୟବାଦୀ ବନ ବିଦ୍ୟାଳୟର ପ୍ରତିଷ୍ଠାତା ଭାବେ, ସେ ଖୁବ୍ ସୁଖ୍ୟାତି ଅର୍ଜନ କରିଥିଲେ ସେତେବେଳେ । ସେ ସେତେ-ବେଳେ ଅତ୍ୟନ୍ତ ହୃଦୟସ୍ପର୍ଶୀ ଭାଷାରେ ମଧୁବାବୁଙ୍କର ଭୂୟସୀ ପ୍ରଶଂସା କରି କହିଥିଲେ ଧନ୍ୟ ଆପଣଙ୍କର ଜନ୍ମ, ଉତ୍କଳର ଘରେ ଘରେ ଆପଣ ସୁପରିଚିତ । ଆଜି, ଏ ଜାତୀୟ ଅନୁଷ୍ଠାନରେ ଆପଣଙ୍କୁ ସଭାପତି ରୂପେ ପାଇଲେ ଆମେ ଧନ୍ୟ ହେବୁ । ସଭାରେ ଉପସ୍ଥିତ ଶ୍ରୋତା-ମଣ୍ଡଳୀଙ୍କୁ ସମ୍ବୋଧିତ କରି ସେ ଆହୁରି କହିଥିଲେ ଭାଇମାନେ, ମଧୁ-ବାବୁଙ୍କୁ ସଭାପତି କରିବା ଦ୍ୱାରା ତାଙ୍କ ସମ୍ମାନ ଯେ ବଢ଼ିବ, ତା' ନୁହେଁ, ତାଙ୍କୁ ସମ୍ମାନ ଦେବା ଦ୍ୱାରା ଆମ୍ଭେମାନେ ସମ୍ମାନିତ ହେବା ।

ଗୋପବନ୍ଧୁଙ୍କର ଏଇ କଥା ପଦକ, ମଧୁବାବୁଙ୍କୁ ଏପରି ପ୍ରଭାବିତ କରିଥିଲା ସତ୍ୟବାଦୀ ବନ ବିଦ୍ୟାଳୟକୁ ଏକ ମଣିଷଗଢ଼ା କାରଖାନା କହି, ଏହାର କର୍ମୀମାନେ ଦିନେ ସମଗ୍ର ଓଡ଼ିଆ ଜାତିକୁ ଦିଗ୍‌ଦର୍ଶନ ଦେବେ ବୋଲି ମତ ବ୍ୟକ୍ତ କରିଥିଲେ ।

କହିବା ବାହୁଲ୍ୟ, ମଧୁବାବୁଙ୍କର ଏଇ ଭବିଷ୍ୟତ ବାଣୀକୁ ସମ୍ମାନ ଦେଇ, ୧୯୧୯ ଅପ୍ରିଲ ୧୯ ଓ ୨୦ ତାରିଖରେ ଦୁଇ ଦିନ ବ୍ୟାପି ଅନୁଷ୍ଠିତ ଉତ୍କଳ ସମ୍ମିଳନୀର କଟକ ଅଧିବେଶନରେ ଗୋପବନ୍ଧୁ ଅଧ୍ୟକ୍ଷତା କରିବାର ସର୍ବୋଚ୍ଚ ସମ୍ମାନ ପାଇଥିଲେ । ଏବଂ ସେଇ ସଭାରେ ତାଙ୍କର ଦୀର୍ଘ ଅଭିଭାଷଣରେ ସେ ସେତେବେଳେ "ଉତ୍କଳ ସମ୍ମିଳନୀ" ପ୍ରତିଷ୍ଠାନ କେବଳ ଏକ ଭାଷଣ ସର୍ବସ୍ୱ ପ୍ରସ୍ତାବର ସଭାମଞ୍ଚ ନୁହେଁ" ବୋଲି ମତ ବ୍ୟକ୍ତ କରି, କହିଥିଲେ : ସୁଦୂର ସିଂହଭୂମ୍‌ରେ ଶତାଧିକ ଓଡ଼ିଆ ସ୍କୁଲ ଏ ଭିତରେ ସ୍ଥାପନ କରାଯାଇ ଶିକ୍ଷାର ଆନ୍ଦୋଳନ ଭିତରେ ମାତୃଭାଷାର ପ୍ରଚାର କାର୍ଯ୍ୟ ଆରମ୍ଭ କରାଯାଇ ପାରିଛି ଏବଂ ଏ ସବୁର ପରିଚାଳନା ପାଇଁ ଆପଣମାନେ ପଇସିକିଆ ଫଣ୍ଡକୁ ମୁକ୍ତ ହସ୍ତରେ ଦାନ କରନ୍ତୁ" ସେତେବେଳେ ଯେଉଁ ଉତ୍ସାହ ଉଦ୍ଦୀପନା ସଭାରେ ଲକ୍ଷ୍ୟ କରା-ଯାଇଥିଲା, ସେଥିରୁ ସମସ୍ତେ ଅନୁମାନ ନେଇଥିଲେ . ମିଷ୍ଟର ଦାସଙ୍କର ବିଶ୍ୱସ୍ତ ଅନୁଗାମୀ ଭାବେ, "ଉତ୍କଳ ସମ୍ମିଳନୀ' ଅନୁଷ୍ଠାନ ଦେଇ 'ସ୍ୱତନ୍ତ୍ର ଓଡ଼ିଶା" ଦାବି ହାସଲ କରିବା ପାଇଁ ଏକ ବିପ୍ଳବ ମଞ୍ଚ ଭୂମିକାରେ ଏଣିକି ପ୍ରମୁଖ ସଂଗ୍ରାମୀ ଭାବେ ଓହ୍ଲେଇବେ ବୋଧହୁଏ ଉତ୍କଳ ଗୌରବ ମଧୁବାବୁଙ୍କ ପାଖେ ପାଖେ ଉତ୍କଳମଣି ଗୋପବନ୍ଧୁ ।

କିନ୍ତୁ ଭାଗ୍ୟର ବିଡମ୍ବନା । ମାତ୍ର ଦେଢ଼ ବର୍ଷ ଭିତରେ, ଚାରୋଟି ପ୍ରଦେଶ ଭିତରେ ବିକ୍ଷିପ୍ତ ହୋଇ ରହିଥିବା ସମଗ୍ର ଓଡ଼ିଆ ଭାଷାଭାଷି ଅଞ୍ଚଳକୁ ନେଇ ଏକ ବୃହତ୍ତର "ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ" ଦାବିକୁ ସମ୍ବନ୍ଧିତ କରିବା ଦିଗରେ ଗୋପବନ୍ଧୁ ଦାସ ତାଙ୍କ ଆନ୍ଦୋଳନର ମାର୍ଗ ଦର୍ଶନକୁ ଏପରି ଭାବେ ଅଦଳ ବଦଳ କରିଦେଲେ, ପୂର୍ବର ନିର୍ଦ୍ଧାରିତ କାର୍ଯ୍ୟକ୍ରମରେ ଏପରି ବିଭ୍ରାଟ ସୃଷ୍ଟି କଲେ ଯାହା ଫଳରେ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ପରି ସହକର୍ମୀ, ଯେ ସିଂହଭୂମ୍‌ରେ ପ୍ରଚାରକ ଅନନ୍ତ ମିଶ୍ରଙ୍କ ସଙ୍ଗରେ ଧରି ଗୋପବନ୍ଧୁଙ୍କ ମହାନ୍ ବାଣୀ "ମିଶୁ ମୋର ଦେହ ଏ ଦେଶ ମାଟିରେ, ଦେଶବାସୀ ଚାଲି ଯାଆନ୍ତୁ ପିଠିରେ" ଆଦର୍ଶକୁ ସିଂହଭୂମିର ଘରେ ଘରେ ପ୍ରଚାର କରି, ଗୋପବନ୍ଧୁଙ୍କ ଭାବମୂର୍ତ୍ତିକୁ ଜାତୀୟ ସ୍ତରରେ ମହିମାନ୍ୱିତ କରି ତୋଳିବା ପାଇଁ ପ୍ରାଣପାତ କରିବାର ସଂକଳ୍ପ ନେଇଥିଲେ ସେ ମଧ୍ୟ ଶେଷକୁ ଗୋପବନ୍ଧୁଙ୍କଠୁ ବାଟକାଟି ତାଙ୍କ ଗାଁକୁ ଫେରି ଆସିବାକୁ ବାଧ୍ୟ ହୋଇଥିଲେ ।

ଏ ଘଟଣାଟି ଛୋଟ, ଏବଂ କଥାଟି ସାମାନ୍ୟ । କିନ୍ତୁ ପରାଧୀନ ଭାରତବର୍ଷକୁ ବ୍ରିଟିଶ୍ ହାତରୁ ମୁକ୍ତ କରିବା ପାଇଁ, ଗାନ୍ଧି ଯୋଉ ଅସହଯୋଗ ଆନ୍ଦୋଳନ ଆରମ୍ଭ କରିଥିଲେ ସେତେବେଳେ, ଗୋପବନ୍ଧୁ ହଠାତ୍ ସେଥିରେ ଯୋଗ ଦେବା ପାଇଁ ଯେପରି ଅସ୍ଥିର ହୋଇ ପଡ଼ିଥିଲେ ତାରି ଭିତରେ ହିଁ ଥିଲା, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ପାଇବାର ସମସ୍ତ ସମ୍ଭାବନାକୁ ନଷ୍ଟଭ୍ରଷ୍ଟ କରି ଦେବାର ବିଭ୍ରାନ୍ତିକର କାର୍ଯ୍ୟକଳାପର ସିଦ୍ଧାନ୍ତ ।

୧୯୨୦ରେ ନାଗପୁର କଂଗ୍ରେସ ଅଧିବେଶନକୁ ଯାଇ, ସେଠାରେ ଭାଷା ସୂତ୍ରରେ ବିଭିନ୍ନ ପ୍ରଦେଶର ସୀମା ନିର୍ଦ୍ଧାରଣ କରାଯିବ, ଏଇ ପ୍ରସ୍ତାବଟିକୁ ଜାତୀୟ କଂଗ୍ରେସ ଗ୍ରହଣ କରି ନେବା ଯୋଗୁଁ ଗୋପବନ୍ଧୁ

ଏପରି ଉତ୍ସାହିତ ହୋଇ ପଡିଲେ, ସେଇଠୁ ସିଧା ସଳଖ ସିଂହଭୂମ୍‌ର ଚକ୍ରଧରପୁରଠାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ଏକ ବରାଦୀ ବୈଠକରେ ଏକ ମନମୁଖି ପ୍ରସ୍ତାବ ଆଗତ କରିବସି, ଉତ୍କଳ ସମ୍ମିଳନୀର ସମସ୍ତ ମୂଳ ଯୋଜନାକୁ ଓଲଟ ପାଲଟ କରିଦେଲେ । ଅତ୍ୟନ୍ତ ଦୃଢ଼ କଣ୍ଠରେ ସେ କହିଲେ : ମହାତ୍ମାଗାନ୍ଧିଙ୍କ ଅସହଯୋଗ ଆନ୍ଦୋଳନ ଯୋଗୁଁ ମାତ୍ର ଦୁଇ ବର୍ଷ ଭିତରେ ଇଂରେଜ ସରକାର ଭାରତ ଛାଡି ଚାଲିଯିବାକୁ ବାଧ ହେବ । ମୋର ମଧ୍ୟ ଏଇ ବିଶ୍ୱାସ, ଆମେ ପରାଧୀନତାରୁ ଖୁବ୍ ଶୀଘ୍ର ମୁକ୍ତ ହେବା । ସୁଖର କଥା, ନାଗପୁର କଂଗ୍ରେସ ଅଧିବେଶନରେ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ପ୍ରସ୍ତାବ ଗୃହୀତ ହୋଇଛି । ସ୍ୱାଧୀନତା ପ୍ରାପ୍ତି ପରେ, ବିଭିନ୍ନ ପ୍ରଦେଶର ସୀମା ସରହଦ ନିର୍ଣ୍ଣୟ କାର୍ଯ୍ୟ, ଭାଷା ସୂତ୍ରରେ କଂଗ୍ରେସ ସରକାର ନିଷ୍ପତ୍ତି କରିବ । ଏହା ହିଁ ଆମ ଉତ୍କଳ ସମ୍ମିଳନୀର ଲକ୍ଷ୍ୟ ଏବଂ ନୀତିଗତ ଦାବି ଥିଲା । ତେଣୁ, ଉତ୍କଳ ସମ୍ମିଳନୀ କେବଳ ଏକ ସ୍ୱତନ୍ତ୍ର ଅନୁଷ୍ଠାନ ହୋଇ ରହିବା ଆଉ ଉଚିତ୍ ନୁହେଁ । ମହାଭାରତୀୟ କଂଗ୍ରେସର ଜାତୀୟ ସ୍ରୋତ ସହିତ ଓଡ଼ିଆ ଜାତିର ପ୍ରାଣ ପ୍ରବାହ ଧାରା ମିଶି ଏକ ହୋଇଯିବା ଉଚିତ୍ ।

"ଉତ୍କଳ ସମ୍ମିଳନୀ"ର ଏଇ ଅଧିବେଶନଟି ପୁରାପୁରି ଉଦ୍ଦେଶ୍ୟ ମୂଳକ ଥିଲା । ଗୋପବନ୍ଧୁଙ୍କର ପ୍ରଚ୍ଛନ୍ନ ହାତ ଥିଲା ଯା' ପଛରେ । କାରଣ ସେଇ ଅଧିବେଶନରେ 'ଉତ୍କଳ ସମ୍ମିଳନୀ' ପରି ଏକ ଓଡ଼ିଆ ଜାତୀୟତାବାଦୀ ଅନୁଷ୍ଠାନର ମୂଳ ଉତ୍ପାଟନ କରିବାର ସାଂଘାତିକ ବ୍ୟବସ୍ଥା ଥିଲା, ସେଇ ପ୍ରତିଷ୍ଠାନର ଅଗ୍ରଗଣ୍ୟ ପ୍ରାଣ ପୁରୁଷ ଉତ୍କଳ ଗୌରବ ମଧୁସୂଦନ ଦାସ, ଜୀବିତାବସ୍ଥାରେ ସମ୍ପୂର୍ଣ୍ଣ କର୍ମଠ ରହିଥିବା ସତ୍ତ୍ୱେ ତାଙ୍କୁ ସଭାସ୍ଥଳକୁ କାହିଁକି ଡକାଯାଇ ନଥିଲା ? ଏ' ପ୍ରଶ୍ନକୁ କେନ୍ଦ୍ର କରି ଜାତୀୟ ସ୍ତରରେ ବାଦାନୁବାଦ ହେବାର ଯଥାର୍ଥତାକୁ କେହି କ'ଣ ଅସ୍ୱୀକାର କରି ପାରେ ?

ଏ ପ୍ରସ୍ତାବ ତ ପାରିତ କରେଇ ନେଲେ ଗୋପବନ୍ଧୁ, ଜଗବନ୍ଧୁ ସିଂହଙ୍କ ପରି ଝାଣ୍ଡୁଆ ଲୋକଙ୍କୁ ସଭାପତି ଆସନରେ ବସେଇ ଦେଇ, ଏବଂ ନୀଳକଣ୍ଠ ଦାଶ ଓ ବିଶ୍ୱନାଥ କରଙ୍କ ପରି ମହାଜ୍ଞାନୀ ଏବଂ ମହାବାଗ୍ମୀ ଦୁଇଜଣଙ୍କୁ ବୁଝେଇ-ଶୁଝେଇ ଧରାଧରି କରି, କିନ୍ତୁ ଫଳ କ'ଣ ହେଲା ?? ୧୯୦୩ରୁ ୧୯୧୮ ପର୍ଯ୍ୟନ୍ତ, ମଧୁବାବୁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଦାବି ଆନ୍ଦୋଳନର ପୁରୋଭାଗରେ ରହିବା ଦ୍ୱାରା ୨୫।୮।୧୯୧୧ରେ ଭାରତର ବଡଲାଟ ଲର୍ଡ ହାର୍ଡିଞ୍ଜ ତାଙ୍କ ବିଲାତ ସରକାରଙ୍କୁ ଯୋଉ ପ୍ରସ୍ତାବ ଦେଇଥିଲେ ବଙ୍ଗଳା ଦେଶରୁ ଓଡ଼ିଶା ଓ ଛୋଟ ନାଗପୁର ଅଞ୍ଚଳକୁ କାଢ଼ିନେଇ ବିହାର ଓଡ଼ିଶା ପ୍ରଦେଶ ଗଠନ କରାଯାଉ କିନ୍ତୁ ସେ ପ୍ରସ୍ତାବକୁ ନାପସନ୍ଦ କରି ପରେ ଲର୍ଡ କର୍ଜନ ଯେଉଁ ମନ୍ତବ୍ୟ ଦେଇଥିଲେ "What is the good of Orissa being tied to the tail of Bihar where there is no affinity of language and race × × ଏବଂ ସେଇ ମତାମତକୁ ଅଗ୍ରାଧିକାର ଦେଇ ଇଂରେଜ ସରକାର ଯଥା ଶୀଘ୍ର ଏକ ସ୍ୱତନ୍ତ୍ର, ଓଡ଼ିଶା ପ୍ରଦେଶ ଓଡ଼ିଆ ଜାତିକୁ ଦେବା ପାଇଁ ବିଚାର କରୁଛି ବୋଲି ସୂଚନା ମିଳୁଥିଲା, ତାହା ସେ ହଠାତ୍ ସ୍ଥଗିତ ହୋଇଗଲା 'ଉତ୍କଳ ସମ୍ମିଳନୀ' ଅନୁଷ୍ଠାନକୁ ଭାଙ୍ଗି ଦେଇ, ସମସ୍ତ ଓଡ଼ିଆ ଜାତିକୁ ବ୍ରିଟିଶ୍ ସରକାର ବିରୁଦ୍ଧରେ ଲଢ଼ିବା ପାଇଁ ଗୋପବନ୍ଧୁ କଂଗ୍ରେସ ପ୍ଲାଟଫର୍ମ ଉପରେ ଛିଡା ହୋଇ ଆହ୍ୱାନ ଦେବା ଦ୍ୱାରା ସେଥି ପାଇଁ ଗୋପବନ୍ଧୁ ହିଁ ଏକମାତ୍ର ଦାୟୀ, ଏହା କହିବା କ'ଣ ଅସଙ୍ଗତ ହେବ କାହା ପକ୍ଷରେ ?

ଅବଶ୍ୟ ଭାରତ ସ୍ୱାଧୀନ ହେଲା ପର୍ଯ୍ୟନ୍ତ ଗୋପବନ୍ଧୁ ଦାସ ରହିଥିଲେ, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ରୂପ ରେଖ କ'ଣ ହୋଇଥାନ୍ତା, ସେ କଥା ବହୁ ବିବଦମାନ ଯୁକ୍ତି ତର୍କର କଥା ହେଲେ ବି, ୧୯୨୦ରେ ଉତ୍କଳ ସମ୍ମିଳନୀର ଓଡ଼ିଆ ଜାତୀୟତାବାଦୀ ଭାବମୂର୍ତ୍ତି ଟି ଗୋପବନ୍ଧୁଙ୍କ ଯୋଗୁଁ ସଂପୂର୍ଣ୍ଣ ଭାବେ କଂଗ୍ରେସ ଜନମତର "ଗୋରା ସରକାରଙ୍କୁ ହଟାଅ" ସ୍ଲୋଗାନ ଭିତରେ ଆନ୍ଧ୍ର, ବିହାର, ବେଙ୍ଗଲ ଓ ମଧ୍ୟପ୍ରଦେଶର କଂଗ୍ରେସୀ ନେତାଙ୍କ ବାହୁ ଆସ୍ଫୋଟ ମାରିବାର ରଙ୍ଗଭୂମିରେ କେନ୍ଦ୍ରିତ ହୋଇଯିବାରୁ ମଧୁବାବୁ ସଂପୂର୍ଣ୍ଣ ଭାବେ ଉଦାସୀନ ରହିବା ଯେ ଶ୍ରେୟସ୍କର ମନେ କରିଥିଲେ ଏହା ଆଜି ଅବିଶ୍ୱାସର କଥା ହୋଇ ନ ପାରେ । ଫଳରେ ୧୯୨୦ରୁ ୧୯୨୮ ପର୍ଯ୍ୟନ୍ତ, ଗୋପବନ୍ଧୁଙ୍କ ଦେହାନ୍ତ ହେବା ଯାଏଁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଦାବି ଏକ ପ୍ରକାର ନିଷ୍ପ୍ରଭ ହୋଇଯାଇଥିଲା । ଏବଂ ସ୍ୱାଧୀନତା ଆନ୍ଦୋଳନରେ ଗୋପବନ୍ଧୁଙ୍କ କଂଗ୍ରେସର ଯେଉଁ ଅନୁଗାମୀମାନେ ଥିଲେ, ଓଡ଼ିଶାରେ ସେମାନେ ମଧ୍ୟ ସ୍ୱାଧୀନତା ଆସିବା ପର୍ଯ୍ୟନ୍ତ ଅପେକ୍ଷା କରି ବସିବା ଉଚିତ୍ ବୋଲି ବିଚାର କରି ସ୍ୱତନ୍ତ୍ର ପ୍ରଦେଶ ଦାବି ସମ୍ପର୍କରେ ଏକ ପ୍ରକାର ନିଶ୍ଚେଷ୍ଟ ରହିବା ସ୍ପଷ୍ଟ ଲକ୍ଷ୍ୟ କରାଯାଇଥିଲା ।

କିନ୍ତୁ ଏଇ ଦଶନ୍ଧି ବେଳେ, ସ୍ୱତନ୍ତ୍ର ପ୍ରଦେଶ ଗଠନ ଦାବି ହାସଲ ଦିଗରେ ଉଦ୍ୟମ ଏକ ପ୍ରକାର ନିଷ୍ପ୍ରାଣ ହୋଇ ଆସୁଥିବା ବେଳେ, ଜାତୀୟ ଉଦ୍ଦୀପନାକୁ ପ୍ରଜ୍ୱଳିତ କରି ତୋଳିବା ପାଇଁ ବ୍ରିଟିଶ୍ ବାହୁ-ଗୁସ୍ପା ତଳେ ଓଡ଼ିଶାର ଗଡ଼ଜାତ ରାଜ୍ୟମାନଙ୍କରେ ଯେଉଁ ରାଜା, ମହାରାଜା ଓ ଜମିଦାର ମାନେ ଥିଲେ ସେମାନେ ଯେପରି ଆଗଭର ହୋଇ ଜାତୀୟ ମଞ୍ଚପରେ ଏକତ୍ର ହୋଇଥିଲେ, ତାହା ଯେ ସେମାନଙ୍କର ଉଦାର ଦେଶ ବତ୍ସଳତାର ପ୍ରଶଂସନୀୟ ପଦକ୍ଷେପ ଥିଲା ଏକଥା ଏଠାରେ ସ୍ୱୀକାର କରାଯିବା ଉଚିତ୍ ।

ବସ୍ତୁତଃ ୧୯୩୬ରେ ଓଡ଼ିଆ ଜାତିକୁ ଯେଉଁ ସ୍ୱତନ୍ତ୍ର ପ୍ରଦେଶ ମିଳିଲା ତାହା ବାସ୍ତବରେ ଥିଲା ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ

ତ୍ୟାଗ ଓ ପରିଶ୍ରମର ଫଳ । ଏବଂ ଯଥାର୍ଥରେ ଓଡ଼ିଶା ପ୍ରଦେଶ ଗଠନର ସ୍ମରଣୀୟ ଦିବସଟି ହେଉଚି ୧୯୩୧ ମସିହାର ଜାନୁୟାରୀ ୭ ତାରିଖ ବୋଲି କେହି ଯଦି କହେ ତେବେ ସେ ସତ୍ୟର ଅପଳାପ କରୁଚି ବୋଲି କୁହାଯାଇ ନପାରେ ।

ସେଦିନ ଲଣ୍ଡନରେ ଅନୁଷ୍ଠିତ ଦ୍ୱିତୀୟ ଗୋଲ୍‌ଟେବୁଲ୍ ବୈଠକରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବ, "ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ" ସପକ୍ଷରେ ପ୍ରସ୍ତାବ ଆଗତ କରିଥିଲେ ଏବଂ ତାହା ସର୍ବସମ୍ମତି କ୍ରମେ ଗୃହୀତ ହୋଇଥିଲା ।

ମାତ୍ର ତିନିବର୍ଷର ବ୍ୟବଧାନ ଭିତରେ (୧୯୨୮ରୁ ୧୯୩୧) ଓଡ଼ିଆ ଜାତିର ସ୍ୱପ୍ନ ଏବଂ କୁଳବୃଦ୍ଧ ମଧୁସୂଦନ ଦାସଙ୍କ ସାଧନାର ସଫଳ ରୂପାୟନ ଏପରି ଆଶ୍ଚର୍ଯ୍ୟଜନକ ଭାବେ ସମ୍ପାଦିତ ହୋଇପାରିବ ପାରଳା ମହାରାଜାଙ୍କ ନେତୃତ୍ୱରେ, ଏହା ଯେପରି ଓଡ଼ିଶାବାସୀ ଆଶା କରିନ ଥିଲେ ।

ମହାରାଜାଙ୍କର ଏଇ କୃତିତ୍ୱକୁ ଅଭିନନ୍ଦିତ କରିବା ପାଇଁ କଟକ ଟାଉନ୍ ହଲ୍‌ରେ ଯୋଉ ବିଶାଳ ଜନ ସମାବେଶ ହୋଇଥିଲା ସେଇ ୧୯୩୧ ମସିହା ଜାନୁୟାରୀ ୧୯ ତାରିଖରେ, ତାହା ମଧ୍ୟ ଅଲୌକିକ ଥିଲା । ସେ ସଭାରେ ଆଡ଼ଭୋକେଟ ବୀରକିଶୋର ଦାସ କହିଥିଲେ ପୁରୁଷୋତ୍ତମ ଦେବଙ୍କୁ କାଞ୍ଚି ଯୁଦ୍ଧରେ ଶ୍ରୀ ଜଗନ୍ନାଥ ଯେପରି ଜୟଯୁକ୍ତ କରାଇଥିଲେ, ସେଇ ପରି ଗଙ୍ଗଗଜପତି ବଂଶଧର କୃଷ୍ଣଚନ୍ଦ୍ରଙ୍କୁ ଆଜି ଶ୍ରୀଜଗନ୍ନାଥ ଜୟଯୁକ୍ତ କରାଇଛନ୍ତି ।

ସଭାପତି ଶ୍ରୀକୃଷ୍ଣ ମହାପାତ୍ର କହିଥିଲେ ଶ୍ରୀକୃଷ୍ଣଚନ୍ଦ୍ର ଗଜପତି ହେଉଛନ୍ତି ଓଡ଼ିଆ ଜାତିର ରାଜରାଜେଶ୍ୱର " King of the Oriya race".

ବାହାର ଓଡ଼ିଶାର ତତ୍କାଳୀନ ବିହାରୀ ନେତା ସଚ୍ଚିଦାନନ୍ଦ ସିଂହ, ମିଷ୍ଟର ଦାସଙ୍କୁ (ଉତ୍କଳ ଗୌରବ ମଧୁସୂଦନ ଦାସ୍) କହିଥିଲେ "Oriya must Congratulate ourselves that you have got a worthy champion in the Maharaja for your causes. It is for him that the Round Table Conference conceded the claim of Oriyas for a Separate Province practically he wrenched the decision from the unwilling British homes."

ମିଷ୍ଟର ସି.କେ. ଫିଲିପ୍ ଯେ କି ଓଡ଼ିଶାର କମିଶନର ଥିଲେ ସେ ମଧ୍ୟ ପରେ ମହାରାଜାଙ୍କୁ ଭୂୟସୀ ପ୍ରଶଂସା କରି କହିଥିଲେ The Maharaja of Parlakhemundi took prominent part. His efforts in the Round Table conference have been rewarded successfully. The Maharaja is a great protagonist of the Oriya cause as I have found it in our towns of Ganjam District in 1924.

ଗୋଲ୍‌ଟେବୁଲ୍ ବୈଠକ ଶେଷରେ ୧୬।୧।୧୯୩୧ ତାରିଖ ଦିନ ସେକ୍ରେଟାରୀ ଅଫ୍ ଷ୍ଟେଟ ସାର ସାମୁଏଲ ହୋର୍ ଘୋଷଣା କରିଥିଲେ ଭାରତରେ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ହୋଇ ରହିବ । ତା'ର ସୀମା ନିର୍ଣ୍ଣୟ କରିବାକୁ ଗୋଟିଏ ସ୍ୱତନ୍ତ୍ର କମିଟି ସାର୍ ଓଡ଼ୋନେଲ୍‌ଙ୍କ ଅଧ୍ୟକ୍ଷତାରେ ଗଠିତ ହେବ । ସେଥିରେ ଦୁଇଜଣ ଭାରତୀୟ ସଭ୍ୟ ରହିବେ । ବମ୍ବେର ଶ୍ରୀ ଏଚ୍ ଏନ୍. ମେହେଟା ଏବଂ ଆସାମର ତରୁଣ ରାମ ଫୁକାନ୍ । ଏଇ କମିଟିକୁ ସାହାଯ୍ୟ କରିବା ପାଇଁ ଓଡ଼ିଆଙ୍କ ପକ୍ଷରୁ ରହିବେ ପାରଳାଖେମୁଣ୍ଡି ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଏବଂ ସରକାରଙ୍କ ପକ୍ଷରୁ ମନୋନୀତ ସଭ୍ୟଭାବେ ତେଲୁଗୁମାନଙ୍କ ପ୍ରତିନିଧି ରୂପେ ରହିବେ ସି.ଭି.ଏସ୍ ନରସିଂହ ରାଜୁ ଏବଂ ବିହାରୀମାନଙ୍କ ପକ୍ଷରୁ ରହିବେ ସଚ୍ଚିଦାନନ୍ଦ ସିଂହ ।

ଦୁର୍ଭାଗ୍ୟର କଥା ହେଲା ଏଇ ସୀମା ନିର୍ଦ୍ଧାରଣ କମିଟି ପାଖରେ ସାକ୍ଷ୍ୟ ପ୍ରମାଣ ଦେବାପାଇଁ ଓଡ଼ିଶା ପକ୍ଷରୁ ପାରଳା ମହାରାଜାଙ୍କ ନେତୃତ୍ୱରେ ବିଭିନ୍ନ ଜମିଦାରୀ ଓ ତାଲୁକମାନଙ୍କରୁ ଯେଉଁ ବିଶିଷ୍ଟ ପ୍ରତିନିଧିମାନେ ଆସିଲେ ଏବଂ ବ୍ରହ୍ମପୁରର ତେଲୁଗୁ ଭାଷାଭାଷୀଙ୍କ ସମିତି ପକ୍ଷରୁ ଯୋଉ ପ୍ରତିନିଧିମାନେ ଆସିଲେ, ଓଡ଼ିଶା ସହିତ ଗଞ୍ଜାମ ଓ ଜୟପୁର ମିଶ୍ରଣ ସପକ୍ଷରେ ଓ ବିପକ୍ଷରେ ସ୍ମାରକପତ୍ର ଦେବାପାଇଁ, ସେମାନଙ୍କ ଲିଖିତ ଓ ମୌଖିକ ସାକ୍ଷ୍ୟ ପ୍ରମାଣକୁ ଓଡ଼ୋନେଲ୍ ସାହେବ ଆଦୌ ବିଚାରକୁ ନ ନେଇ ତାଙ୍କର ଏକଚ୍ଛତ୍ରବାଦୀ ଖାମଖିଆଲି ସ୍ୱଭାବ ଅନୁସାରେ, ମାନ୍ଦ୍ରାଜର ପ୍ରାଦେଶିକ ସରକାରଙ୍କ ପକ୍ଷରୁ ନିଯୁକ୍ତ ହୋଇ ସାକ୍ଷ୍ୟ ଦେବାକୁ ଆସିଥିବା ସେନ୍‌ସେସ୍ ଅଧ୍ୟକ୍ଷ ମିଷ୍ଟର ୟିଟସ୍‌ଙ୍କଠାରୁ ସାକ୍ଷ୍ୟ ପ୍ରମାଣ ଗ୍ରହଣ କରି ସେ ଦାଖଲ କରିଥିବା ଭାଷାଭିତ୍ତିକ ମାନଚିତ୍ରକୁ ପ୍ରାଧାନ୍ୟ ଦେଇ, ଗଞ୍ଜାମର ସୀମା-ସରହଦ ବଣ୍ଟନ କାର୍ଯ୍ୟ ଶେଷ କରି ତାଙ୍କ ରିପୋର୍ଟ ୧୯୩୨ ମସିହାରେ ଭାରତ ସରକାରଙ୍କୁ ପଠାଇ ଦେଲେ । ( ମି: ଇଟିସ୍ ୧୯୩୧ ମସିହାର ଜନସୁମାରୀ ହିସାବ ସଙ୍ଗେ

ଯେଉଁ ମାନଚିତ୍ରଟି ଦାଖଲ କରିଥିଲେ, ସେଇଟି ଅବିକଳ ଭାବେ ମାନ୍ଦ୍ରାଜ ପ୍ରଦେଶର ସେକ୍ରେଟେରିଏଟ୍ ରେକର୍ଡରେ ହିଁ ଥିଲା ।

ଓଡ଼େନେଲ୍‌ଙ୍କ ଏପରି ମନମୁଖୀ କାର୍ଯ୍ୟକଳାପରେ ପ୍ରତିବାଦ ଅନ୍ୟ ଦୁଇଜଣ ଭାରତୀୟ ସଭ୍ୟ ଶ୍ରୀ ଫଜ୍ଲାନ୍ ଓ ମିଷ୍ଟର ମେହେଟା ଅବଶ୍ୟ କରିଥିଲେ ଏବଂ ସେମାନଙ୍କ ରିପୋର୍ଟକୁ ବିଚାରକୁ ନ ନେଇ ଦକ୍ଷିଣ ଓଡ଼ିଶାର ସୀମା ନିର୍ଦ୍ଧାରଣ କାର୍ଯ୍ୟ କାହିଁକି ଶେଷ କରିଗଲା, ଏ ପ୍ରଶ୍ନ ବି ପଚାରିଥିଲେ । କିନ୍ତୁ ବିଶେଷ କିଛି ସୁଫଳ ମିଳି ନଥିଲା । ଏ' ଦୁଇଜଣ ଭାରତୀୟ ସଭ୍ୟଙ୍କ ମତରେ ନୂତନ ଓଡ଼ିଶା ପ୍ରଦେଶରେ ପାରଳାଖେମୁଣ୍ଡି ତାଲୁକ ସଙ୍ଗେ ମାଳି ଅଞ୍ଚଳ ଏବଂ ଉପକୂଳବର୍ତ୍ତୀ ସୁନାପୁରଠାରୁ ଦକ୍ଷିଣକୁ ନୌପଡ଼ା ପର୍ଯ୍ୟନ୍ତ ଭୂଭାଗ, ଯାହା ଫଳରେ ଟେକ୍କଳି, ତରଳା, ମନ୍ଦସା ବାରୁଆ, ବୁଡ଼ାରସିଂ, ଜଳନ୍ତର ପ୍ରଭୃତି ଓଡ଼ିଆ ଜମିଦାରୀ ଅଞ୍ଚଳ ଓଡ଼ିଶା ସାଙ୍ଗେ ମିଶିବା କଥା ଏବଂ ଏହା ବ୍ୟତୀତ ବିଶାଖାପାଟଣା ଜିଲ୍ଲାର ମାଳିଅଞ୍ଚଳ ଯେଉଁଥିରେ ଜୟପୁର ଜମିଦାରୀ ଅନ୍ତର୍ଭୁକ୍ତ ହୋଇଛି, ସେ ସମସ୍ତ ମଧ୍ୟ ଓଡ଼ିଶାରେ ମିଶିଯାଇଥାନ୍ତା, ତାହା ବାଦ୍ ପଡ଼ିଯିବା ଘୋର ଅନ୍ୟାୟ ହେଲା—ଏହାର କୌଣସି ସୁବିଚାର ହେଲା ନାହିଁ । ଯଦିଓ ଆନ୍ଧ୍ର ମହାସଭାର ସଭାପତି ନିଜେ, ଆନ୍ଧ୍ରପ୍ରଦେଶ ଗଠନ ପାଇଁ ଦାବି କଲାବେଳେ ଜଏଣ୍ଟ ପାର୍ଲିଆମେଣ୍ଟ କମିଟି ଆଗରେ ସ୍ୱୀକାର କରିଥିଲେ ଆନ୍ଧ୍ରପ୍ରଦେଶର ପୂର୍ବୋତ୍ତର ସୀମା ନୌପଡ଼ା ପର୍ଯ୍ୟନ୍ତ ମାତ୍ର ଚିହ୍ନଟ ହେବା ଉଚିତ ।

କେବଳ ଓଡ଼େନେଲ୍ ସାହେବଙ୍କର ଏଇ ପ୍ରକାର ଭୁଲ ନିଷ୍ପତ୍ତି କଥା ନୁହେଁ, ୧୯୩୬ରୁ ୧୯୪୭ ଯାଏଁ ଭାରତ ସ୍ୱାଧୀନ ହେବା ପର୍ଯ୍ୟନ୍ତ, ବ୍ରିଟିଶ ସାମ୍ରାଜ୍ୟବାଦୀଙ୍କ ପାଖରେ ଯେତେସବୁ ମେମୋରେଣ୍ଡମ୍ ଦିଆଯାଇଥିଲା ବିଭିନ୍ନ ସମୟରେ, ସେ ସବୁକୁ ମଧ୍ୟ ଅଳିଆଗଦା ଭିତରକୁ ଇଂରେଜ ସରକାରଙ୍କ ଫିଙ୍ଗିଦେବା ଔଚିତ୍ୟ, ଓଡ଼ିଆ ଜାତିକୁ ଯେତେ ବାଧିବା କଥା ନୁହେଁ, ୧୯୪୭ରେ ସ୍ୱାଧୀନତା ପ୍ରାପ୍ତି ଅବସରରେ ସେହି ଓଡ଼େନେଲ୍‌ଙ୍କ ପୂର୍ବ ଭୁଲ୍ ନିଷ୍ପତ୍ତି ଯୋଗୁଁ ବ୍ରହ୍ମପୁରର ଦକ୍ଷିଣକୁ ପ୍ରାୟ ୧୦୦ କିଲୋମିଟରରୁ ଅଧିକ ଓଡ଼ିଆ ଉପକୂଳ ଅଞ୍ଚଳ ଓଡ଼ିଶା ଯେ ହରାଇବାକୁ ବାଧ୍ୟ ହେଲା, ଏ ଅନ୍ୟାୟର ପ୍ରତିକାର ମଧ୍ୟ ଏ ପର୍ଯ୍ୟନ୍ତ ନ ହୋଇ ପାରିବା ଯେ କେତେ ଲଜ୍ଜାର କଥା ତାହା ମଧ୍ୟ ଏବର ଶାସନ କ୍ଷମତାସୀନ ଓଡ଼ିଆ ନେତାମାନେ ସ୍ୱୀକାର କରୁନାହାନ୍ତି ।

ଏଇ ପ୍ରସଙ୍ଗରେ ଓଡ଼ିଶାର, ଅନ୍ୟ ଏକ ଉପାନ୍ତ ଅଞ୍ଚଳ ବିହାରର ସିଂହଭୂମ୍ । ସେଠିକାର ସମସ୍ୟା ବିଚାର କଲାବେଳେ ମଧ୍ୟ ଓଡ଼େନେଲ୍ କମିଟି ଯେଉଁ ମାରାତ୍ମକ ଭୁଲ୍ କରି ବସିଥିଲେ ତାହା ବି ସଂକ୍ଷିପ୍ତ ଏଠାରେ ଆଲୋଚନା କରାଯାଇପାରେ । ସିଂହଭୂମ୍ କ୍ଷେତ୍ରରେ ଓଡ଼େନେଲ୍ ସାହେବ ସେଠାର ଭୂତାତ୍ତ୍ୱିକ ମାନଚିତ୍ରକୁ ରେଫର (refer) କଲେ ନାହିଁ । ମାନଚିତ୍ରର ଆବଶ୍ୟକତା ମଧ୍ୟ ଦେଖିଲେ ନାହିଁ । ଏଠାରେ ବିହାରର କେତେକ ପ୍ରାଦେଶିକ ଭାବାପନ୍ନ ନେତାଙ୍କ କୁମନ୍ତ୍ରରେ ପ୍ରଭାବିତ ହୋଇ ସେମାନଙ୍କ ପ୍ରୋତ୍ସାହନରେ, ସୀମାରେଖା ଚିହ୍ନଟ ସକାଶେ ସେଠାକୁ ଯାଇଥିବା କମିଟିର ଉଦ୍ଦେଶ୍ୟ ଏବଂ ସିଦ୍ଧାନ୍ତ କ'ଣ, ତାହା ଅନୁସନ୍ଧାନ କରି ବୁଝିବାକୁ କଷ୍ଟ ସ୍ୱୀକାର ନକରି, ନିଜେ ମନେ ମନେ ଭାବିନେଲେ ସିଂହଭୂମି ଜିଲ୍ଲାର ସଂଖ୍ୟାଧିକ ଆଦିବାସୀ କଦାପି ଓଡ଼ିଶାରେ ରହିବାକୁ ଚାହାନ୍ତି ନାହିଁ । ଏଣୁ ସେମାନଙ୍କ ସିଂହଭୂମ୍ ଜିଲ୍ଲାକୁ ଝଣ୍ଡିଆ-ଝାବର କରିବା ଉଚିତ ହେବ ନାହିଁ । ସିଂହଭୂମ୍ ଜିଲ୍ଲା ଭିତରେ ଥିବା ଦୁଇଟି ଓଡ଼ିଆ ଗଡ଼ଜାତ ରାଜ୍ୟ-ସରାଇକଳା ଏବଂ ଖରସୁଆଁ, ଏ ଦୁଇଟି ଷ୍ଟେଟର ରାଜାମାନଙ୍କ ମତାମତ କିନ୍ତୁ ଓଡ଼ିଶା ସପକ୍ଷରେ ଅନୁକୂଳ ନୁହେଁ କି ସ୍ପଷ୍ଟ ହେବା ମଧ୍ୟ ସମ୍ଭବ ନୁହେଁ । ତେଣୁ ଓଡ଼ିଶା ସହିତ ସିଂହଭୂମ୍ ମିଶ୍ରଣ ସମସ୍ୟାକୁ ଉଦ୍ଦେଶ୍ୟ ମୂଳକ ଭାବେ ନଷ୍ଟଭ୍ରଷ୍ଟ କରି ଦେଲେ ।

ଏଠାରେ ଉଲ୍ଲେଖ କରାଯାଇପାରେ : ସେଇ ୧୯୩୧ ମସିହାରେ, ସିଂହଭୂମ୍ ଜିଲ୍ଲାରେ ଓଡ଼ିଆମାନଙ୍କ ପକ୍ଷରୁ ଦେଶ ମିଶ୍ରଣ କାର୍ଯ୍ୟ କରିବାକୁ ଦାୟିତ୍ୱ ଦିଆଯାଇଥିଲା ପଣ୍ଡିତ ନୀଳକଣ୍ଠ ଦାସଙ୍କୁ । ସେଠାରେ ସେ ଯେଉଁ ସମସ୍ୟାର ସମ୍ମୁଖୀନ ହୋଇଥିଲେ, ତାହା ଦୈନିକ ଆଶାର ୧।୭।୧୯୩୧ ତାରିଖ ସଂସ୍କରଣରେ ପ୍ରକାଶ କରିଥିଲେ । ଶିରୋନାମା ଥିଲା ଉତ୍କଳବାସୀର ବର୍ତ୍ତମାନ କର୍ତ୍ତବ୍ୟ କ'ଣ ?

ସେ ଲେଖିଥିଲେ ସର୍ବଏ ବିଷୁବ ପ୍ରଚୁର ଚାଲିଚି, ଉତ୍କଳର ପୁରପଲ୍ଲୀରେ ହେଉ ବା ଧଳଭୂମଅଞ୍ଚଳ ବା ସିଂହଭୂମ୍‌ର ବିଭିନ୍ନ ସ୍ଥାନରେ ହେଉ—ସିଂହଭୂମ୍ କାହାର ଏହା ଶୀଘ୍ର ନିର୍ଣ୍ଣୟ ହେଉ । ସୁଭାଷ ସେନଗୁପ୍ତ, ରାଜେନ୍ଦ୍ର ପ୍ରସାଦ ଏ ମାନଙ୍କ ପାଖରେ ଦାବୀ କରାଯାଉ । ଆଜି ଏକଥା କହିବାର ବିଶେଷ ଦରକାର ପଡ଼ିଛି କାହିଁକି ? କଂଗ୍ରେସ ମୋତେ ସିଂହଭୂମରେ କାମକରିବାକୁ ଦେଇଛନ୍ତି । ମୁଁ ଯେଉଁ ସେଇ ଜିଲ୍ଲାରେ କାମ କଲାବେଳେ ସେଇ ଜିଲ୍ଲାରେ ଥିବା କେତେକ ବଙ୍ଗାଳୀ ଓକିଲ ପ୍ରଭୃତିଙ୍କଠାରୁ ଶୁଣିଲି ପୁରୀ କଂଗ୍ରେସ ପାଇଁ ଚାନ୍ଦା ଦେବାକୁ କିଛି ଆପତ୍ତି ନାହିଁ । ଯଦି ସେପରି କରିବାରେ ଉତ୍କଳର ଅଂଶ ବୋଲି ସୂଚନା ଥାଏ ତେବେ ଆମ୍ଭେମାନେ ପୁରୀ କଂଗ୍ରେସରେ ଯୋଗ ଦେବାର ବିରୋଧୀ । ଏତିକି ନୁହେଁ, ସେମାନେ କହିଲେ : ସିଂହଭୂମି ଏବେ ବିହାରରେ ରହିବା ପାଇଁ ଆମେ ଲଢ଼ିବୁ, ତା' ହେଲେ ପରେ ବଙ୍ଗସୀମା ଚିହ୍ନଟ କଥା ଉଠିଲା ବେଳେ ଏ ଖଣ୍ଡକୁ ବଙ୍ଗଳାକୁ ଟାଣି ନେବାକୁ ସୁବିଧା ହେବ । କାରଣ ବିହାରର ବସ୍ତୁତଃ ଏ ଭୂମିରେ ଦାବୀ କରିବା କିଛି ନାହିଁ । କିନ୍ତୁ ଏହି ସିଂହଭୂମି ଖଣ୍ଡ ଥରେ ଓଡ଼ିଶାକୁ ଚାଲିଗଲେ ଆଉ ବଙ୍ଗଳାର ଦାବୀ ଉଠାଇବା ସହଜ ହେବ ନାହିଁ ।

ସେମାନେ କହିଲେ ଆପଣମାନେ ନେତୃ ଶ୍ରେଣୀର ଲୋକ । ଆପଣ ସୁଭାଷ, ସେନ୍‌ଗୁପ୍ତ, ରାଜେନ୍ଦ୍ର ପ୍ରସାଦଙ୍କ ସଙ୍ଗେ ବିଚାର କରି ଯାହା ଠିକ୍ କରିଦେବେ ଆମେ ତାହା ମାନି ନେବାକୁ ବାଧ୍ୟ ହେବୁ ।

ମୁଁ ସେଠାରୁ ଗୋଟିଏ ଷ୍ଟେଟମେଣ୍ଟ କଲିକତା ଏବଂ ପାଟଣାର ପ୍ରଧାନ ପ୍ରଧାନ କାଗଜକୁ ପଠାଇ ଦେଲି । ମନେ କଲି, ଏହି ଉପାୟରେ ସୁଭାଷ, ସେନ୍‌ଗୁପ୍ତ ଓ ରାଜେନ୍ଦ୍ର ପ୍ରସାଦଙ୍କ ଦଳର ପ୍ରାରମ୍ଭିକ ମତାମତ ଫୁଟି ପଡ଼ିବ । ମୁଁ ଯାହା ଲେଖିଥିଲି ତାହାର ସାରମର୍ମ ଠିକିଏ ଶୁଣନ୍ତୁ

ସିଂହଭୂମି, ବିହାର ଆଞ୍ଚଳରେ ନାହିଁ । ବିହାରୀ ମାନେ ମାଗଧି ମୈଥିଳୀ ପ୍ରଭୃତି ନିଜ ନିଜ ମାତୃଭାଷାକୁ ତଳକୁ ପକାଇ ଏବେ ହିନ୍ଦୀକୁ ଦେଶୀ ଭାଷା ଅର୍ଥାତ୍ ସ୍କୁଲ୍-କଚେରୀର ଭାଷା ରୂପେ ଧରିଛନ୍ତି । ଛୋଟନାଗପୁର ତଥା ସିଂହଭୂମ୍‌ରେ ମଧ୍ୟ ତାହାହିଁ ହୋଇଯାଇଛି । ହିନ୍ଦୁସ୍ଥାନୀ ଯେତେବେଳେ ଭାରତର ରାଷ୍ଟ୍ରଭାଷା ହେଉଛି, ସେତେବେଳେ ଓଡ଼ିଶାରେ ମଧ୍ୟ ହିନ୍ଦୀ ଚଳିବା ଉଚିତ୍ । ବିହାର ଏହି ହିନ୍ଦୀ ବଳରେ ଆଜି ସିଂହଭୂମିକୁ ଦାବୀ କରୁଛି । ଯେ କଥାର ଅର୍ଥ କିଛି ନାହିଁ । ସମସ୍ତ ଉତ୍ତର ଛୋଟନାଗପୁରର ସୀମାରେଖା ଡେଇଁ ସିଂହଭୂମି ପର୍ଯ୍ୟନ୍ତ ଗିଳି ଦେବାକୁ ବିହାର କେବଳ ସକ୍ଷମ ହେବ ନାହିଁ । ବିହାରର ଏ ପଣ୍ଡ ପରିଶ୍ରମ କେବଳ ଅସଙ୍ଗତ ନୁହେଁ, ଘୋର ଅଦୂର ଦର୍ଶିତାର ଫଳ ।

ବାସ୍ତବରେ, ବିହାରର କଂଗ୍ରେସ ପକ୍ଷରୁ ରାଜେନ୍ଦ୍ର ପ୍ରସାଦ ଏବଂ ବଙ୍ଗର ମେଦିନୀପୁରରେ ସୁଭାଷଚନ୍ଦ୍ର ଏବଂ ସେନ୍‌ଗୁପ୍ତଙ୍କ ପ୍ରଭାବ ହେତୁ ଓଡ଼ିଆଙ୍କ ଦୁର୍ବଳ ନେତୃତ୍ୱ ସୀମାନିର୍ଦ୍ଦେଶ କମିଟିକୁ ପ୍ରଭାବିତ କରି ପାରିଲା ନାହିଁ । ପାରଳା ମହାରାଜାଙ୍କ ଶାଳକ, ସିଂହଭୂମିର ଖରସୁଆଁ ରାଜ୍ୟର ରାଜା ହୋଇଥିବାରୁ ମହାରାଜାଙ୍କ ପ୍ରଭାବରେ ସେ ଓଡ଼ିଶାରେ ସିଂହଭୂମ୍‌ର ମିଶ୍ରଣ ସପକ୍ଷରେ ମତ ଦେଇଥିଲେ ମଧ୍ୟ ତାଙ୍କ ମତ ବିରୁଦ୍ଧରେ ସରାଇ-କଲା ରାଜାଙ୍କୁ ସେଠାର ନେତାମାନେ ପ୍ରୋତ୍ସାହିତ କରିଥିଲେ । ଆଦି-ବାସୀମାନଙ୍କୁ ଉତ୍ସାହିତ କରିବା ମୂଳରେ ସେହି ରାଜେନ୍ଦ୍ର ପ୍ରସାଦ, ସୁଭାଷ ଏବଂ ସେନଗୁପ୍ତଙ୍କ ଅଦୃଶ୍ୟ ପ୍ରଭାବ ନିହିତ ଥିଲା । ”

ପଣ୍ଡିତ ନୀଳକଣ୍ଠ ଦାସ, ସେଇ ପ୍ରବନ୍ଧରେ ଆହୁ ମଧ୍ୟ ଲେଖି-ଥିଲେ :—ଏବେ ଖବର ପାଉଛି, ଗତ ସପ୍ତାହ ମଧ୍ୟରେ ସିଂହଭୂମିରେ ବଙ୍ଗାଳିମାନେ ଜୋର ଆନ୍ଦୋଳନ କରି ଦେଇଛନ୍ତି । ସେ ଜିଲ୍ଲାର ଓଡ଼ିଆ-ମାନେ ସେମାନଙ୍କ ପାଖେ ଏବେ ଠିଆ ହୋଇ ପାରିବେ ନାହିଁ । ସେହି ଶ୍ରେଣୀର ସଭାସମିତିମାନ କରି ବଙ୍ଗଳା ପାଇଁ ସିଂହଭୂମିକୁ ଦାବୀ କରିବା ସଙ୍ଗେ ସଙ୍ଗେ ଏବେ ବିହାରରେ ରହୁ ବୋଲି ଜୋର ସ୍ୱର ଉଠାଇବା ଆରମ୍ଭ କଲେଣି । ବିହାରୀମାନେ ମଧ୍ୟ ଏ କ୍ଷେତ୍ରରେ ଯେଉଁପରି ଭାବ ଦେଖାଇ ଆସିଛନ୍ତି ସେଥିରେ ପରେ ସେ କଥା କ'ଣ ହେବ ସେ କଥା ଭାବିବା ବୋଲି ମନେ କରିବେ ନାହିଁ । ଏପରି ପ୍ରାଦେଶିକ ସଂକୀର୍ଣ୍ଣତା ମୂଳକ ଉଦ୍ୟମ ପାଖେ ଆମମାନଙ୍କୁ ଶୀଘ୍ର ଛିଡ଼ା ହେବାକୁ ହେବ ।

ଏତିକି ଲେଖିସାରି, ପଣ୍ଡିତଙ୍କ ଅତି ଆକୁଳ ପ୍ରାଣରେ ଓଡ଼ିଆ-ମାନଙ୍କୁ ଲକ୍ଷ୍ୟ କରି ନିବେଦନ କରିଥିଲେ ମୋର ଦେଶବାସୀଙ୍କ ପାଖେ ଏକାନ୍ତ ଅନୁରୋଧ, ଏ ବିଷୟରେ କ'ଣ କରିବାକୁ ହେବ ତାହା ଶୀଘ୍ର ସ୍ଥିର କରନ୍ତୁ । ସରକାର ଏତେ କାଳ ଓଡ଼ିଶାକୁ ଖଣ୍ଡ ବିଖଣ୍ଡିତ ଓ ନାନା ଭାବରେ ଦୁର୍ବଳ କରି ରଖିଛନ୍ତି, ଏ ସରକାର ମଧ୍ୟ ଦୁର୍ବଳ ପକ୍ଷ ହେବେ ବୋଲି ଯଦି କେହି ଆଶା କରନ୍ତି ସେ ଭ୍ରାନ୍ତ ।

ଉପରୋକ୍ତ ମନ୍ତବ୍ୟଟି ପଣ୍ଡିତ ନୀଳକଣ୍ଠ ଦାସଙ୍କର ୧୯୩୧ ମସିହାର ବିବୃତ୍ତି, ଦୈନିକ ଆଶାରେ । ତା'ର ପାଞ୍ଚବର୍ଷ ପରେ ୧୯୩୬ରେ ଦୁର୍ବଳ ଓଡ଼ିଆ ଜାତିର ମନ ରଖିବା ପାଇଁ ପାରଳା ରାଜାଙ୍କ ବ୍ୟକ୍ତିତ୍ୱର ଉପରେ ଉପକୂଳ ଅଞ୍ଚଳର ମାତ୍ର ଛଅଟି ଜିଲ୍ଲାକୁ ନେଇ ଏକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ହେଲା । ଏପରି ଏକ ବିକଳାଙ୍ଗ ପ୍ରଦେଶ ଗ୍ରହଣ ନ କରିବା ପାଇଁ କେତେ ଜଣ ଓଡ଼ିଆ ଜାତୀୟତା-ବାଦୀ ମତ ବ୍ୟକ୍ତ କଲା ବେଳେ ଖଲ୍ଲିକୋଟ ରାଜାଙ୍କ ପରି କେତେଜଣ ଉଦାରପନ୍ଥୀ "ଯାହା ମିଳୁଛି ସେତିକି ପ୍ରଥମେ ଗ୍ରହଣ କରି ନେବା ବୁଦ୍ଧିମାନର କାର୍ଯ୍ୟ ହେବ" ବୋଲି ସିଦ୍ଧାନ୍ତ ନେଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗ୍ରହଣ କଲେ ।

ମହାଭାରତୀୟ କଂଗ୍ରେସ ଦଳ, ସେତେବେଳ ପର୍ଯ୍ୟନ୍ତ ଯଦିଓ ସ୍ୱାଧୀନତା ଆନ୍ଦୋଳନରେ ବ୍ୟସ୍ତ ରହିଥିଲେ, ତଥାପି ୧୯୨୦ରେ ନାଗ-ପୁର ଅଧିବେଶନରେ ଭାଷା ସୂତ୍ରରେ ପ୍ରଦେଶ ସୀମା ସରହଦ ଗଠନ କରାଯିବା ପ୍ରସ୍ତାବ ପାଶ୍ କରିଥିଲେ, ଓଡ଼ିଆ ଜାତିକୁ ଇଂରେଜ ସରକାର ସ୍ୱତଃ ପ୍ରବୃତ୍ତ ହୋଇ ସ୍ୱତନ୍ତ୍ର ପ୍ରଦେଶ ଦେଉଛି ବୋଲି ହୃଦୟଙ୍ଗମ କଲେ ସେତେବେଳେ ସେମାନଙ୍କ ପାର୍ଟି ପକ୍ଷରୁ ଏକ ଖୋଲା ବିବୃତ୍ତି ଦେଇ-ପାରିଥାନ୍ତେ ଇଂରେଜ ସରକାର ଓଡ଼ିଆ ଜାତିକୁ ଖଣ୍ଡ ବିଖଣ୍ଡିତ ପ୍ରଦେଶଟିଏ ନଦେଇ, ବିଭିନ୍ନ ପ୍ରଦେଶର ଉପାନ୍ତ ସୀମାରେ ଯୋଉସବୁ ଓଡ଼ିଆ ଭାଷାଭାଷି ଅଞ୍ଚଳ ଅଛି ସେସମସ୍ତ ଏଇ ଅବକାଶରେ ଓଡ଼ିଶା ପ୍ରଦେଶ ସହିତ ମିଶିଲ କରିବାରେ କର୍ତ୍ତବ୍ୟନିଷ୍ଠ ହେଉ ।

କିନ୍ତୁ ଏପରି କୌଣସି ସମୟୋପଯୋଗୀ ମତାମତ କଂଗ୍ରେସ ଦଳ ଦେଇ ନ ଥିଲେ କି ଖୋଦ୍ ଗାନ୍ଧିଜୀ, ସବୁ ଶ୍ରେଷ୍ଠ ବଡ଼ ସମସ୍ୟାର ସମାଧାନ ପାଇଁ କଂଗ୍ରେସ ଦଳର ସର୍ବୋଚ୍ଚ ନେତା ଭାବେ ଦିଗ୍‌ଦର୍ଶନ ଦେବାରେ ସର୍ବଦା ରହିଥିବା ସତ୍ତ୍ୱେ ଓଡ଼ିଆ ଜାତିର ଅର୍ଦ୍ଧଶତାବ୍ଦୀ ବ୍ୟାପୀ ସମସ୍ୟାର ସମାଧାନ ହେବାକୁ ଯାଉଥିବା ବେଳେ ନିଜ ମହାନୁଭବତାର ପରିଚୟ ଦେଇ ନଥିଲେ । ବରଂ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ହେଇ ଗଲା ପରେ ସେଇ ୧୯୩୭ରେ ବିଧାନ ସଭା ପାଇଁ ଯେଉଁ ନିର୍ବାଚନ ହେଲା, ସେଥିରେ ଗାନ୍ଧିଙ୍କ କଂଗ୍ରେସ ଦଳ କିପରି ଶାସନ କ୍ଷମତା ହାସଲ କରିବ ସେଥି ପାଇଁ ଅସ୍ଥିର ହେଇ ପଡ଼ିଥିଲେ ସେ କଥା ଆମେ ସମସ୍ତେ ଜାଣିଛୁ ।

ପଣ୍ଡିତ ନୀଳକଣ୍ଠ ଦାସ କଂଗ୍ରେସର ଜଣେ ମୌଳିକ ଚିନ୍ତାବାଦୀ ଝାଣ୍ଡୁଆ ନେତାଥିଲେ । ଯେତେବେଳେ ସେ କଂଗ୍ରେସର ସ୍ୱାଧୀନତା ଆନ୍ଦୋଳନକୁ ନୀତିଗତ ଭାବେ ସମର୍ଥନ କରି ବହୁବାର କାରାବରଣ କରିଥିଲେ ମଧ୍ୟ ଓଡ଼ିଆ ଜାତିର ଦେଶ ମିଶ୍ରଣ ସମସ୍ୟାକୁ, କଂଗ୍ରେସ ପାର୍ଟିର ପ୍ରଭାବଶାଳୀ ନେତା ରାଜେନ୍ଦ୍ର ପ୍ରସାଦଙ୍କ ପ୍ରାଦେଶିକ ମନୋଭାବକୁ ବରାବର ସମାଲୋଚନା କରି ଓଡ଼ିଆ ଜାତିର ନ୍ୟାଯ୍ୟ ଦାବି ହାସଲ କ୍ଷେତ୍ରରେ ସଂପୂର୍ଣ୍ଣ ନିର୍ଭୀକ ଏବଂ ସଂଗ୍ରାମଶୀଳ ଥିଲେ । ଏବ ଆଶା କରାଯାଉଥିଲା ଯେ ଯଦି ନେତୃତ୍ୱ ଦେବାରେ ଓଡ଼ିଆ ଜାତିର ଅପ୍ରତିଦ୍ୱନ୍ଦ୍ୱୀ ଜନନାୟକ ଭାବେ ସ୍ୱାଧୀନତା ପ୍ରାପ୍ତି ପର୍ଯ୍ୟନ୍ତ ଓଡ଼ିଶାର ସର୍ବମାନ୍ୟ ନେତା ରୂପେ ରାଜ୍ୟର କ୍ଷମତାସୀନ ସରକାରକୁ ହାତ ମୁଠାରେ ରଖି ପାରିବାରେ ସକ୍ଷମ ହେବେ, ତେବେ ନବ ଗଠିତ ଓଡ଼ିଶା ପ୍ରଦେଶ ସହିତ ବିଚ୍ଛିନ୍ନ ପ୍ରଦେଶରେ ରହିଥିବା ଓଡ଼ିଆ ଭାଷାଭାଷୀ ଅଞ୍ଚଳ ଦିନେ ନା ଦିନେ ସ୍ୱତନ୍ତ୍ର ପ୍ରଦେଶ ସହିତ ନିଶ୍ଚୟ ମିଶାଇ ପାରିବେ ।

କିନ୍ତୁ ଭାଗ୍ୟର ବିଡମ୍ବନା, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ମିଳିବାର ଗୋଟିଏ ବର୍ଷ ପୂରିଚି କି ନାହିଁ ଓଡ଼ିଶାର କଂଗ୍ରେସ ଦଳ ଭିତରେ ଗୋଷ୍ଠି ବିବାଦ ଆରମ୍ଭ ହୋଇଗଲା । ଗାନ୍ଧିଙ୍କ କଂଗ୍ରେସ ପାର୍ଟିରେ ଯୋଉ ୨ଟି ଦଳର ମୁଖ୍ୟ ଭାବେ ଜହରଲାଲ ନେହେରୁ ଏବଂ ଜୟପ୍ରକାଶ ନାରାୟଣ ଥିଲେ, ଓଡ଼ିଶାରେ ଜୟପ୍ରକାଶ ନାରାୟଣ ଏବଂ ରାମମନୋହର ଲୋହିଆଙ୍କ ଅନୁଗାମୀମାନେ, ମୋତିଲାଲ ନେହେରୁଙ୍କ କଂଗ୍ରେସ ଗୋଷ୍ଠିଠାରୁ ଏକ ପ୍ରକାର ପୃଥକ ହେଇଗଲେ । ମୋତିଲାଲଙ୍କ ସହକର୍ମୀ, ନୀଳକଣ୍ଠ ଦାସ, ଦିବାକର ପଟ୍ଟନାୟକ, ଯଦୁମଣି ମଙ୍ଗରାଜ ପ୍ରଭୃତିଙ୍କଠାରୁ ଜୟପ୍ରକାଶଙ୍କ ଅନୁଗାମୀ ଗୋଷ୍ଠୀର ନବକୃଷ୍ଣ ଚୌଧୁରୀ, ସୁରେନ୍ଦ୍ର ଦ୍ୱିବେଦୀ, ମାଳତୀ ଚୌଧୁରୀ ପ୍ରଭୃତି ଅଲଗା ହୋଇଯାଇ ନୀଳକଣ୍ଠ ଦାସଙ୍କୁ ସକ୍ରିୟ କ୍ଷେତ୍ରରେ ବିରୋଧ କଲେ । ମାତ୍ର ଦେଢବର୍ଷର ଝିଙ୍କା ଓଟରା ବିବାଦ ଭିତରେ ଏକ ତୃତୀୟ ଦଳର ଆବିର୍ଭାବ ହେଲା ଯାହାର ନେତା ଭାବେ ବାହାରିଲେ ହରେକୃଷ୍ଣ ମହତାବ ।

ଓଡ଼ିଆ ଜାତିକୁ ସ୍ୱତନ୍ତ୍ର ପ୍ରଦେଶ ମିଳିବାର ୧୧ ବର୍ଷ ପରେ ୧୯୪୭ରେ ଯେତେବେଳେ ସ୍ୱାଧୀନତା ମିଳିଲା ଭାରତବାସୀଙ୍କୁ, ସେତେବେଳେ କେନ୍ଦ୍ରରେ ଶାସନ କ୍ଷମତାସୀନ ଦଳର ଦୁଇଜଣ ଅଗ୍ରଣୀ ନେତା ଜହରଲାଲ ନେହେରୁ ଏବଂ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଏ' ଦୁହିଁଙ୍କର ଅତି ବିଶ୍ୱସ୍ତ ଏବଂ ପ୍ରିୟପାତ୍ର ଦେଖାଦେଲେ ଓଡ଼ିଶା କଂଗ୍ରେସ ଦଳର ମହାପ୍ରତାପଶାଳୀ ନେତା ହରେକୃଷ୍ଣ ମହତାବ ।

ଏ' ଇତିହାସ ସମସ୍ତେ ଜାଣନ୍ତି । ଜାଣନ୍ତି, କିପରି ସେଇ ମହତାବଙ୍କ ଚେଷ୍ଟାରେ ଛଅଟି ଜିଲ୍ଲାର ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ସହିତ ୧୯୪୭ର ଡିସେମ୍ବର ମାସରେ ସମସ୍ତ ଗଡ଼ଜାତ ଅଞ୍ଚଳ ମିଶାଇ ଦେବାର ଆଲୋଚନା ଚାଲିଲା କଟକରେ । ଦିଲ୍ଲୀରୁ ସର୍ଦ୍ଦାର ପଟେଲ ଆସିଲେ ଏବଂ ୨୬ଟି ଗଡ଼ଜାତର ରାଜା ମହାରାଜାମାନଙ୍କ ଭିତରୁ କାହାକୁ ବୁଝେଇ-ମନେଇ, କାହାକୁ ଧମକ ଦେଇ, ଓଡ଼ିଶା ସହିତ ଗଡ଼ଜାତ ମିଶ୍ରଣର ଚମକପ୍ରଦ ଅଧ୍ୟାୟର ପୂର୍ଣ୍ଣଚ୍ଛେଦ ଟାଣିଲେ । କିନ୍ତୁ ଏତିକି ବେଳେ ସିଂହଭୂମ ଜିଲ୍ଲାରେ ଥିବା ସରେଇକଲା ଏବଂ ଖରସୁଆଁ ଗଡ଼ଜାତ ରାଜ୍ୟ ଦୁଇଟିର ମିଶ୍ରଣ ଯୋଗୁଁ ଯୋଉ ହଟ୍ଟଗୋଳ ସୃଷ୍ଟି ହେଲା, ସେଇ ଗଡ଼ଜାତ ରାଜ୍ୟ ଦୁଇଟିର ପ୍ରଜାମଣ୍ଡଳ ଅନୁଷ୍ଠାନ ଏବଂ ପ୍ରଜାସମିତି ପାର୍ଟି ଦ୍ୱାରା ଷ୍ଟେଟ ଭିତରେ ଏବଂ ଷ୍ଟେଟ ବାହାରେ ବିହାର ସରକାର, ଆଦିବାସୀମାନଙ୍କୁ ମଟେଇ ଯୋଉ ବିଦ୍ରୋହ ସୃଷ୍ଟି କରେଇଲା ଓଡ଼ିଶା ସରକାର ବିରୁଦ୍ଧରେ, ...... ଧନୁ ତୀର ଏବଂ ଗୁଳି ବନ୍ଧୁକର ସଂଘର୍ଷ ହେଲା, ଲୋକ ମଲେ, ଇନ୍‌କ୍ୱାଷ୍ଟ ଚାଲିଲା, ଏବଂ ଶେଷରେ, ସରେଇକଲା ଓ ଖରସୁଆଁ ରାଜ୍ୟ ଦୁଇଟିର ଶାସନ ଦାୟିତ୍ୱ ଓଡ଼ିଶା ସରକାରଙ୍କ ପାଖରୁ କାଢି ନେଇ, ବିହାର ସରକାର ହାତରେ କେନ୍ଦ୍ର ସରକାର ନ୍ୟସ୍ତ କଲେ ଏବଂ ସେଥିଯୋଗୁଁ ସମଗ୍ର ଓଡ଼ିଆଜାତି, ଏପର୍ଯ୍ୟନ୍ତ ଘୋର ଅସନ୍ତୋଷ ଭିତରେ ଯେପରି ଛଟପଟ ହେଉଚି, ତା'ର ପ୍ରତିକାର କ'ଣ ହେବ, କିପରି କରାଯାଇ ପାରିବ, ସେ ଆଲୋଚନା ବୁଦ୍ଧିଜୀବିଙ୍କ ମହଲରେ ଚାଲିବା ଯେ ଖୁବ୍ ସ୍ୱାଭାବିକ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କିନ୍ତୁ ତାର ପ୍ରତିକାର କ'ଣ ହେବ କିପରି ହେବ ଏହାର ଉତ୍ତର ଦେବ କିଏ ? ତାହାହିଁ ଚିନ୍ତାର କଥା ।

ଆବହମାନକାଳରୁ ଯାହା ଦେଖାହେଇ ଆସିଛି, ଓଡ଼ିଆ ଜାତିର ଦୁର୍ଦ୍ଦିନରେ, ରାଜା ଅଶୋକଙ୍କ ବିରୁଦ୍ଧରେ କୌଣସି ଜଣେ ନେତାଙ୍କ

# ଓଡ଼ିଶାରେ ଆଞ୍ଚଳିକ ଆନ୍ଦୋଳନ

□ ଜତେନ୍ଦ୍ର ନାରାୟଣ ଦାଶ

ବିନା କାରଣରେ ହୁଏତ କୌଣସି ଗଣ୍ଡଗୋଳଟାଏ ଘଟିଯାଇ-ପାରେ, ହେଲେ କିଛି ଗୋଟାଏ ଯୁକ୍ତି ନଥାଇ କେବେ କେଉଁଠାରେ ବିଦ୍ରୋହ ବା ଆନ୍ଦୋଳନର ସୂତ୍ରପାତ ହୁଏ ନାହିଁ । ବିଦ୍ରୋହ ଓ ଆନ୍ଦୋଳନ ଉଭୟେ ସଂଘବଦ୍ଧ ପ୍ରତିବାଦର ସ୍ୱରୂପ ହୋଇଥିଲେ ହେଁ ବିଦ୍ରୋହଠାରୁ ଆନ୍ଦୋଳନ ଅଧିକ ସ୍ଥିର, ପ୍ରସାରିତ ଏବଂ ଗଭୀର । 'ସିପାହୀ ବିଦ୍ରୋହ' ଭଳି ବିଦ୍ରୋହଟିଏ ପାଳଗଦା ପରି ଜଳି ଚୁଲି ଲିଭିଯାଇ ପାରେ କିନ୍ତୁ ସ୍ୱାଧୀନତା ଆନ୍ଦୋଳନ ପରି ପ୍ରତିବାଦର ଧାରା, ନିର୍ଦ୍ଦିଷ୍ଟ ଲକ୍ଷ୍ୟ ହାସଲ ନହେବା ଯାଏଁ କେବେ ଆଉ ପ୍ରଶମିତ ହୁଏ ନାହିଁ ।

ସେଥିପାଇଁ କୌଣସି ନିର୍ଦ୍ଦିଷ୍ଟ ଯୁକ୍ତିକୁ ଆଧାର କରି ହୋଇଥିବା ବିଦ୍ରୋହ, ହରତାଳ, ଧାରଣା ବା ଏପରିକି କାଁ ଭାଁ ହିଂସାକାଣ୍ଡ ଅନେକ ସମୟରେ ଯେଉଁ ଆନ୍ଦୋଳନର ପ୍ରଥମ ସୋପାନ ହୋଇଥାଏ ତାର ନିଆଁ ଦିନକୁ ଦିନ ଅଧିକରୁ ଅଧିକ କୁହୁଳେ ସିନା ସହଜରେ ଲିଭେ ନାହିଁ ମୋଟେ । ଅତଏବ ବିଦ୍ରୋହକୁ ଆନ୍ଦୋଳନର ଏକ ପ୍ରାରମ୍ଭିକ ପର୍ଯ୍ୟାୟ ବୋଲି ମଧ୍ୟ କୁହାଯାଇ ପାରେ ।

ଏବେ ଓଡ଼ିଶାର ପଶ୍ଚିମାଞ୍ଚଳରେ ଆଞ୍ଚଳିକ ବୈଷମ୍ୟ, ଅର୍ଥନୈତିକ ଓ ସାଂସ୍କୃତିକ ଅବହେଳାକୁ ନେଇ ଏକ ଭୟଙ୍କର ବିଦ୍ରୋହ ମୁଣ୍ଡ ଟେକୁଛି ବୋଲି ଶୁଣିବାକୁ ମିଳୁଛି । ଏହାର ପ୍ରବକ୍ତାମାନେ ପଶ୍ଚିମାଞ୍ଚଳ ବୋଲି କହିଲେ ଓଡ଼ିଶାର ଗୁଡ଼ିଏ ଗୋଟି ଜିଲ୍ଲା, ଯଥା ସମ୍ବଲପୁର, ସୁନ୍ଦରଗଡ଼, ବଲାଙ୍ଗୀର ଓ କଳାହାଣ୍ଡିକୁ ସେଥିରେ ସାମିଲ କରନ୍ତି । ସେମାନଙ୍କ ଅଭିଯୋଗ ହେଲା ଯେ ସାରା ପଶ୍ଚିମ ଓଡ଼ିଶା ସବୁବେଳେ ସରକାରଙ୍କ ଦ୍ୱାରା ଅବହେଳିତ ହୋଇ ଆସିଛି । ଅର୍ଥନୈତିକ ଶୋଷଣ, ରାଜନୈତିକ ଉପେକ୍ଷାଠାରୁ ଆରମ୍ଭ କରି ସାଂସ୍କୃତିକ ଆକ୍ରମଣ ପର୍ଯ୍ୟନ୍ତ ଅନେକ ଅଭିଯୋଗ ଆଣି, ଏଭଳି ଦୁରବସ୍ଥା ପାଇଁ ସେମାନେ ସରକାରଙ୍କୁ ଦାୟୀ କରନ୍ତି । ଅଦ୍ୟାବଧି ଏଭଳି ନ୍ୟୂନତାରୁ ନିଜକୁ ମୁକୁଳାଇବା ପାଇଁ, ପଶ୍ଚିମ ଓଡ଼ିଶା ମୁକ୍ତି ଫ୍ରଣ୍ଟ (ଓଲଫ), କୋଶଳ ମୁକ୍ତି ମୋର୍ଚ୍ଚା ଓ ପଶ୍ଚିମ ଓଡ଼ିଶା ବିକାଶ ପରିଷଦ ଭଳି ନାନା ଲଢୁଆ ସଂଗଠନ ଏବେ ଠିଆ ହେଲଣି ବୋଲି ବାରମ୍ବାର ଖବରକାଗଜ ମାଧ୍ୟମରେ ଖବରଟିମାନ ପ୍ରକାଶ ପାଉଛି । ଏପରିକି ପଶ୍ଚିମାଞ୍ଚଳର ଜିଲ୍ଲାଗୁଡ଼ିକୁ ନେଇ ଏକ ସ୍ୱତନ୍ତ୍ର ରାଜ୍ୟ ଗଠନ କରାଯିବ ବୋଲି [illegible]' 'ଝାଡ଼ଖଣ୍ଡ' 'ବୋଡ଼ୋଲ୍ୟାଣ୍ଡ' ଓ 'ଗୋର୍ଖାଲ୍ୟାଣ୍ଡ' ରୀତିରେ ଆହ୍ୱାନ ଦିଆଯାଉଛି । ସେଥିପାଇଁ [illegible] ସ୍ତରର ଯଥା [illegible] ନୂଆପଡ଼ା, ସମ୍ବଲପୁର, ବରଗଡ଼ ବଲାଙ୍ଗୀର, ଭବାନୀପାଟଣା, ସୁନ୍ଦରଗଡ଼, ବୌଦ୍ଧ ଓ ଢେଙ୍କାନାଳରେ ଶାଖାମାନ ଖୋଲାଯାଇ କାର୍ଯ୍ୟ ଆରମ୍ଭ ହୋଇଛି ବୋଲି କୋଶଳ ମୁକ୍ତି ମୋର୍ଚ୍ଚା ପକ୍ଷରୁ ମଧ୍ୟ ପ୍ରଚାର କରାଯାଉଛି ।

□... ଏକଥା ନିର୍ବିବାଦରେ କୁହାଯାଇପାରେ ଯେ ଯଦି ଓଡ଼ିଶାକୁ ଯେଉଁଭଳି ଭାଷା, ଭାବ ଓ ଉନ୍ନୟନର ଯୋଜନାରେ ଏକାଠି କରାଯିବା କଥା, ସେଭଳି କରିବାରେ ସାରା ଓଡ଼ିଶାବାସୀ ଏବଂ ସରକାର ଠିକଣା ପଦକ୍ଷେପ ନେଇପାରି ନାହାନ୍ତି × × ×

ଏଇଠି, ସଭିଏଁ ଓଡ଼ିଶାବାସୀ ଗୋଟିଏ କଥା ମନେ ରଖିବା ନିହାତି ଆବଶ୍ୟକ । ପଶ୍ଚିମ ଓଡ଼ିଶା କଥା କହିଲାବେଳେ, ଓଡ଼ିଶାର ମଧ୍ୟଭାଗ ବା ଦକ୍ଷିଣ ଭାଗ ବା ଅନ୍ୟ ଅଞ୍ଚଳମାନ ଯେ ସମୃଦ୍ଧ ଏ ଭୁଲ କାହା ମନରେ ରହିବା ଉଚିତ୍ ନୁହେଁ □

ଏଭଳି ବିଚାର କରିବାର କଥା ଯେ ଓଡ଼ିଶାର ଅନ୍ୟ ଅଞ୍ଚଳ ଅପେକ୍ଷା, ସତରେ କ'ଣ ପଶ୍ଚିମାଞ୍ଚଳ, ସରକାରୀ ବୈମାତୃକ ମନୋଭାବର ଶିକାର ହୋଇଛି, ନା ଏହା ଏକ ନ୍ୟସ୍ତସ୍ୱାର୍ଥ ପ୍ରଣୋଦିତ ଗୋଷ୍ଠୀର ଚକ୍ରାନ୍ତ ! ଓଡ଼ିଶାର ସମୁଦ୍ର କୂଳିଆ ଅଞ୍ଚଳ ଯଥା: ପୁରୀ, କଟକ ଓ ବାଲେଶ୍ୱରରେ ସମସ୍ତ ପ୍ରଗତି ଠୁଳ ହୋଇଛି ବୋଲି ହେଉଥିବା କେତେକ ଅଭିଯୋଗ ସତ୍ୟତା ଅତିରଞ୍ଜିତ ? ପୁଣି ନିଜର ସମସ୍ୟା ପ୍ରତି ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ ସ୍ୱତନ୍ତ୍ର ରାଜ୍ୟ ଗଠନର ଦାବି ଏକ ଚାଲନ୍ତି ଷ୍ଟାଇଲ୍ ହୋଇଥିବା କାରଣରୁ ଏଭଳି ଧମକ ଏକ ଧ୍ୟାନ ଆକର୍ଷଣ ନୀତି ଅଭିମାନର ଆବେଗ ନା ଏଥିରେ ସତରେ ଅସହ୍ୟ ଶୋଷଣ ଏବଂ ଆକ୍ରମଣ ନିହିତ ଅଛି ।

ସଂପ୍ରତି ପଶ୍ଚିମ ଓଡ଼ିଶାରେ ଦେଖାଦେଇଥିବା ଏଭଳି ମନୋଭାବ ଯେତେ କ୍ଷୀଣ ହେଲେ ମଧ୍ୟ, ପ୍ରତ୍ୟେକ ଓଡ଼ିଆ ପାଇଁ ଯଥେଷ୍ଟ ଉଦ୍‌ବେଗର ଅପେକ୍ଷା ରଖେ । କାରଣ ଅନେକ ଅତ୍ୟାଚାର, ଅପମାନ ଓ ଅବହେଳା ପରେ ଏଇ ମାତ୍ର ୧୯୩୬ରେ ଓଡ଼ିଶା ଗଠିତ ହୋଇଛି । ତା'ର ସାଂସ୍କୃତିକ ଓ ଭୌଗଳିକ ପରିଚୟକୁ ନେଇ । ଅଦ୍ୟାବଧି ଅନେକ ଓଡ଼ିଆ ଅଞ୍ଚଳ ଓଡ଼ିଶା ବାହାରେ ରହି-ଯାଇଥିବାବେଳେ ଓଡ଼ିଶା ନିଜକୁ ବଳିଷ୍ଠ ଭାବେ ଗଢ଼ିବା ପାଇଁ ସେଇ ଭୌଗୋଳିକ ପରିସୀମା ଭିତରେ ଚେଷ୍ଟା ଚଳେଇଛି । ଖ୍ରୀ: ତୃତୀୟ ଶତାବ୍ଦୀ କାଳରୁ କଳିଙ୍ଗ ବା ଉତ୍କଳ, ଓଡ୍ର ଓ କୋଶଳ ଆଦି ବିଭିନ୍ନ ପରିଚୟକୁ ଏକତ୍ରିତ କରି ଏ ବିଶାଳ ଭୂଖଣ୍ଡଟି 'ଓଡ଼ିଆ' ନାମକ ଏକ ସାଂସ୍କୃତିକ ଭାଷା ଓ ଭୌଗୋଳିକ ଚେତନାକୁ ପରିବର୍ତ୍ତିତ ହୋଇ ଅବଶେଷରେ (୧୯୩୬) ଏକ ରାଜନୈତିକ ଅଖଣ୍ଡତାରେ ପରିଣତ ହେଲା । ଓଡ଼ିଶାର ଏ ଅଖଣ୍ଡତା ସୋମବଂଶୀ ରାଜା 'ଯଯାତି ପ୍ରଥମ'ଙ୍କ ରାଜତ୍ୱ ସମୟରୁହିଁ ଉତ୍କଳ, ଓଡ୍ର ଓ କୋଶଳକୁ ନେଇ ଗଠିତ ହୋଇ-ସାରିଥିଲା । ଏହା ଫଳରେ କେବଳ ଶାସନ ବା ଭାଷା ଭିତ୍ତିରେ ନୁହେଁ ଏକ ସାମାଜିକ ଏବଂ ସାଂସ୍କୃତିକ ଏକାତ୍ମରେ ମଧ୍ୟ ଓଡ଼ିଶା ଅନେକ ଶତାବ୍ଦୀ ଧରି ଗଠିତ ହୋଇ ସାରିଛି । ଅଥଚ ସ୍ୱାଧୀନତାର ମାତ୍ର ପଚାଶଟି ବର୍ଷ ପୂରୁ ନପୂରୁଣୁ ଏବେ ଏଥିର ଅଖଣ୍ଡତା ପ୍ରତି ଆହ୍ୱାନ ଦିଆଯାଇଛି । ଅତଏବ ଏଭଳି ଏକ ମନୋଭାବକୁ ଅବ-ହେଳା ବା ଦମନ ଭଙ୍ଗିରେ ବିଚାର ନ କରି ସହୃଦୟତାର ସହିତ ଆଲୋଚନା କରିବା ଦରକାର ।

ଅତୀତରେ ଏକ ଅକୁଳାନ, ଅଦୂରଦର୍ଶୀ ଓ ଅହଙ୍କାର ବ୍ୟବସ୍ଥାକୁ ପରିହାର କରି ଏକ ନୂଆ, ଯଥାର୍ଥ, ପ୍ରଗତିଶୀଳ ଓ ଉପକାରୀ ପରିବର୍ତ୍ତନ ଆଣିବା ପାଇଁ ହେଉଥିବା ସଂଗଠିତ, ସଚେତନ ଓ ଉଦ୍ଦେଶ୍ୟମୂଳକ, ଧାରାବାହିକ ପ୍ରଚେଷ୍ଟା ହିଁ ଆନ୍ଦୋଳନ ଅଟେ । ପଶ୍ଚିମ ଓଡ଼ିଶାରୁ ଉଠୁଥିବା ଏଭଳି ଏକ ପ୍ରଚେଷ୍ଟା ଏଇ ଉପରୋକ୍ତ ସଂଜ୍ଞା ଦୃଷ୍ଟିରୁ ଏବେବି ଯଥେଷ୍ଟ କ୍ଷୀଣ ଏବଂ ସାଧାରଣ, ଅତଏବ ଆନ୍ଦୋଳନ ବୋଲି କୁହାଯାଇ ନ ପାରେ । ତଥାପି ଓଡ଼ିଶାର ସାମଗ୍ରିକ ସ୍ୱାର୍ଥକୁ ସାମନାରେ ରଖି ଉଭୟ ସରକାର ଏବଂ ଜନସାଧାରଣ ଏ ଦିଗରେ ଚିନ୍ତାଶୀଳ ହେବା ଏଇ ମୁହୂର୍ତ୍ତରୁ ଜରୁରୀ ଭଳି ମନେ ହୁଏ ।

୧୯୯୦ରେ ଲୋକସଭାକୁ ନିର୍ବାଚିତ ହୋଇଥିବା ବଲାଙ୍ଗୀରର ସଦସ୍ୟ ସେତେବେଳେ ମୁକ୍ତ କରିଥିଲେ ଯେ ଓଡ଼ିଶାର ସଚିବାଳୟରେ ଥିବା ଛଅ ହଜାର, କର୍ମଚାରୀଙ୍କ ଭିତରୁ ପଶ୍ଚିମ ଓଡ଼ିଶାର କର୍ମଚାରୀ ସଂଖ୍ୟା ଷାଠିଏ ମଧ୍ୟ ନୁହେଁ (ଟାଇମସ୍ ଅଫ୍ ଇଣ୍ଡିଆ ୪.୧.୯୦ ) । ଏଭଳି ଅଭିଯୋଗ ସତ୍ୟ ନ ହେଲେ ମଧ୍ୟ ପଶ୍ଚିମ ଓଡ଼ିଶାର ଲୋକେ ସରକାରୀ ନିଯୁକ୍ତି କ୍ଷେତ୍ରରେ ଯେ ଘୋର ଅନ୍ୟାୟର ଶିକାର ହେଉଛନ୍ତି ସେକଥା ବିଶେଷକରି ସେ ଅଞ୍ଚଳରେ ଶିକ୍ଷିତ ବେକାରଙ୍କ ଭିତରେ ବଦ୍ଧମୂଳ ହୋଇଛି ।

ଦ୍ୱିତୀୟ କଥାଟି ହେଲା ଉନ୍ନତିମୂଳକ ଯୋଜନା ପାଇଁ ଦିଆଯାଉଥିବା ଅର୍ଥ ଅନୁଦାନରେ ବୈମାତୃକ ମନୋଭାବ । ସେତେବେଳେ ଉକ୍ତ ସଦସ୍ୟଙ୍କ କହିବା ଅନୁଯାୟୀ କେବଳ ବଲାଙ୍ଗୀରର ୨୫୬ (ପ୍ରକୃତରେ ୨୫୩) ଗୋଟି ଗ୍ରାମ ପଞ୍ଚାୟତ ଭିତରୁ ମାତ୍ର ୧୩୦ଟିରେ ସ୍କୁଲ ଅଛି ଏବଂ ୨୦ଟି ବ୍ଲକ୍‌ରୁ ୮ ଗୋଟି ବ୍ଲକ୍‌ରେ କୌଣସି କଲେଜ ନାହିଁ । ରାଜ୍ୟର ସାକ୍ଷରତା ହାର ଶତକଡ଼ା ୨୭ ଥିବାବେଳେ ସେ ଅଞ୍ଚଳର ସାକ୍ଷରତା ଶତକଡ଼ା ୨୩ ଭାଗ । ସାରା ଦେଶର ଜଳ-ସଂପଦର ଶତକଡ଼ା ୧୦ ଭାଗ ଓଡ଼ିଶାରେ । ସେଥିରୁ ଅଧା କେବଳ ପଶ୍ଚିମ ଓଡ଼ିଶାରେ ଅଛି । ଅର୍ଥାତ୍ ସାରାଦେଶର ଶତକଡ଼ା ୫ ଭାଗ ଜଳ ସଂପଦ ଏ ଚାରିଗୋଟି ଜିଲ୍ଲାରେ ଥିଲେ ମଧ୍ୟ ଉପଯୁକ୍ତ ଜଳସେଚନ ଯୋଜନା ହାତକୁ ନିଆ ନ ଯାଇ ପଶ୍ଚିମ ଓଡ଼ିଶା ପ୍ରତି ଅନ୍ୟାୟ କରାଯାଉଛି । ଏଇଭଳି ରାସ୍ତା-ଘାଟ ଠାରୁ ଆରମ୍ଭ କରି ଶିକ୍ଷା ଓ ଶିଳ୍ପ କ୍ଷେତ୍ରରେ ଏ ଅଞ୍ଚଳକୁ ଜାଣିଶୁଣି ଉପେକ୍ଷା କରାଯାଉଛି ବୋଲି ଶୁଣିବାକୁ ମିଳୁଛି ।

ତୃତୀୟ କଥାଟି ହେଲା ରାଜନୈତିକ ପଦପଦବୀ ବଣ୍ଟନରେ ପଶ୍ଚିମ ଓଡ଼ିଶା ପ୍ରତି ହେୟଭାବ ପ୍ରଦର୍ଶନ । ଓଡ଼ିଶାର ଶାସନ ଓ ନେତୃତ୍ୱରେ ଏ ଅଞ୍ଚଳ ନିଜର ଯଥାଯଥ ପ୍ରତିନିଧିତ୍ୱ ଜାହିର କରି ପାରୁ ନାହିଁ ବୋଲି ଅନେକ କ୍ଷୋଭ ପ୍ରକାଶ କରୁଛନ୍ତି । ଏପରିକି

ଜାଣିଶୁଣି ଅପାରଗ ରାଜନୈତିକ ବ୍ୟକ୍ତିଙ୍କୁ ନେତୃତ୍ୱ ଓ କ୍ଷମତା ଦିଆଯାଇ ପଶ୍ଚିମ ଓଡ଼ିଶାକୁ ଅସମ୍ମାନ କରାଯାଉଛି ବୋଲି ଅନେକ ଶିକ୍ଷିତ ଲୋକ ମଧ୍ୟ ମନେ କରୁଛନ୍ତି । ବାତ୍ୟା, ବନ୍ୟା ଓ ମରୁଡ଼ି ଆଦି ସମୟରେ ନ୍ୟାଯ୍ୟ ଆବଶ୍ୟକତା ହାସଲ କରିବା ଦିଗରେ ଏଭଳି-ନେତୃତ୍ୱ ଅପାରଗତା ଦେଖାଉଛନ୍ତି ବୋଲି ଚିନ୍ତା କରି ଏ ଅଞ୍ଚଳର ଲୋକେ କ୍ଷୁବ୍ଧ ।

ଚତୁର୍ଥ କଥାଟି ହେଲା ଆର୍ଥିକ ଶୋଷଣ । ଓଡ଼ିଶା ବନ ନିଗମ ଏ ଜିଲ୍ଲାଗୁଡ଼ିକରୁ ବାର୍ଷିକ ପ୍ରାୟ ୧୦୦ କୋଟି ଟଙ୍କାର କାରବାର ଓ ସରକାର କେନ୍ଦୁପତ୍ର ବିକ୍ରିରୁ କୋଟି କୋଟି ଟଙ୍କା ଲାଭ ଉଠାଉଥିଲେ ବି ସେଥିରୁ ମାତ୍ର ଶତକଡ଼ା ୩୦ ଭାଗ ଏ ଅଞ୍ଚଳର ଉନ୍ନୟନରେ ଖର୍ଚ୍ଚ କରୁ ନାହାନ୍ତି ଓ ଗତ ଆଠ ଦଶ ବର୍ଷ ଧରି କେନ୍ଦୁପତ୍ର କାରବାରର ଅଡିଟ୍ ସାଙ୍ଗ ହୋଇ ନଥିବାରୁ ସରକାର ଏ ଅନୁଦାନ ବିଷୟରେ ଚିନ୍ତା କରୁ ନାହାନ୍ତି ବୋଲି ଅଭିଯୋଗ ହେଉଛି । ବିଭିନ୍ନ ବହୁମୁଖୀ ବନ୍ଧ ଯୋଜନାରୁ ଉତ୍ପାଦିତ ବିଦ୍ୟୁତ ଓ ଜଳସେଚନରୁ ସରକାର ବାର୍ଷିକ କୋଟି କୋଟି ଟଙ୍କା ପାଉଥିବା-ବେଳେ ଏପ୍ରକଳ୍ପ ଗୁଡ଼ିକର ଆଧୁନିକୀକରଣ ଓ ମରାମତି ପ୍ରତି ମୋଟେ ଧ୍ୟାନ ଦେଉନାହାନ୍ତି ।

ପଞ୍ଚମରେ ସମ୍ବଲପୁରୀ ବା ସେ ଅଞ୍ଚଳର ଭାଷା ଓ ସାହିତ୍ୟ ପ୍ରତି ଉଦାସୀନତା ଏବଂ ପ୍ରଚ୍ଛନ୍ନ ଆକ୍ଷେପ ଏ ଅଞ୍ଚଳର ଏକ ପ୍ରଧାନ ଅସନ୍ତୋଷ ବୋଲି ଜଣାପାଉଛି ।

ଶେଷରେ ପଶ୍ଚିମ ଓଡ଼ିଶାର କଳା, ସଂସ୍କୃତି ଓ ଐତିହ୍ୟ ପ୍ରତି ସରକାର ଯେ ଅଯଥା ପାତର ଅନ୍ତର ଭାବ ପୋଷଣ କରୁଛନ୍ତି ସେକଥା ଅତ୍ୟନ୍ତ ଭୟାବହ ବୋଲି କୁହାଯାଉଛି । ସମ୍ବଲପୁରୀ ଶାଢ଼ୀକୁ କଟକୀ ଶାଢ଼ୀ ବୋଲି ପ୍ରଚାର କରାଇବା, ଦୂରଦର୍ଶନ କେନ୍ଦ୍ରର ଷ୍ଟୁଡିଓ ସେ ଅଞ୍ଚଳରେ ସ୍ଥାପିତ ନ କରିବା ଓ ବିଶେଷ କରି ସରକାରୀ ପ୍ରଚାର ଓ ପ୍ରସାରଣ ମାନଙ୍କରେ ପଶ୍ଚିମ ଓଡ଼ିଶାକୁ ଅନାଦର କରା-ଯାଉଛି ବୋଲି ଯୁକ୍ତି ହେଉଛି ।

ଏଇଭଳି ଅନେକ ଅଭିଯୋଗ ଓ ଅଭିମାନକୁ ନେଇ ପଶ୍ଚିମ ଓଡ଼ିଶାରେ ଏକ ଭାବ-ବିଦ୍ରୋହର ତରଙ୍ଗ ସୃଷ୍ଟି ହୋଇଛି । ହୋଇ-ପାରେ, ଏପରି ବିଦ୍ରୋହ କେବଳ ଶିକ୍ଷିତ ବେକାର ମାନଙ୍କର ବିଦ୍ରୋହ; ହୋଇପାରେ, ସ୍ୱତନ୍ତ୍ର କୋଶଳ ରାଜ୍ୟ ଗଠନର ଆହ୍ୱାନ ଏକ ଏଲିଟ୍ ଗୋଷ୍ଠୀର ଆହ୍ୱାନ, ହେଲେ ଏକଥା ନିର୍ବିବାଦରେ କୁହାଯାଇପାରେ ଯେ ପଶ୍ଚିମ ଓଡ଼ିଶାକୁ ଯେଭଳି ଭାଷା, ଭାବ ଓ ଉନ୍ନୟନର ଯୋଜନାରେ ଉତ୍କଳୀୟ କରାଯିବା କଥା, ସେଭଳି କରିବାରେ ସାରା ଓଡ଼ିଶାବାସୀ ଏବଂ ସରକାର, ଠିକଣା ପଦକ୍ଷେପ ନେଇ ପାରି ନାହାନ୍ତି । ଏପରିକି ଅଞ୍ଚଳର ପାଣିପାଗ ଓ ତାପମାତ୍ରା ଟିଭିରେ ଘୋଷଣା କଲାବେଳେ କେବଳ ଭୁବନେଶ୍ୱର ଓ କଟକରେ ତାକୁ ସୀମିତ ରଖି ସମ୍ବଲପୁରକୁ ସେଥିରେ ସାମିଲ ନ କରିବାର ଅପରିଣାମଦର୍ଶିତା ଦେଖେଇ ଚାଲିଛନ୍ତି ।

ଏଭଳି କ୍ଷେତ୍ରରେ ସମ୍ବଲପୁରୀ ଶାଢ଼ୀକୁ ଓଡ଼ିଶୀ ଶାଢ଼ୀର ପରିଚୟ ଦେଲେ ତାହା ଯଥେଷ୍ଟ ହେବ ନାହିଁ । କିମ୍ବା ଭୁବନେଶ୍ୱରରେ 'ନୂଆଁଖାଇ' ପାଳନ କଲେ ତାହା ପର୍ଯ୍ୟାପ୍ତ ହେବ ନାହିଁ । ଏଥିପାଇଁ ଲୋଡ଼ା ଏକ ଯଥାର୍ଥ ପର୍ଯ୍ୟାଲୋଚନା । ସାମାଜିକ, ଅର୍ଥନୈତିକ, ରାଜନୈତିକ ଏବଂ ସାଂସ୍କୃତିକ ସ୍ତରରେ ଓଡ଼ିଶାର ସବୁ ଅଞ୍ଚଳ ଯେଭଳି ସମତୁଲ୍ୟ ବିକାଶର ସୁଫଳ ଲାଭ କରିବେ, ପୁଣି ଏକ ନିଖିଳ ଉତ୍କଳୀୟ ଭାବଗତ ସଂହତି ଓ ସାଂସ୍କୃତିକ ଐକ୍ୟରେ ସମ୍ବଦ୍ଧ ହୋଇପାରିବେ ସେଥିପାଇଁ ସୁଚିନ୍ତିତ ପ୍ରଚେଷ୍ଟା ହେବା ଦରକାର ।

ଏଇଠି, ସଭିଏଁ ଓଡ଼ିଶାବାସୀ ଗୋଟିଏ କଥା ମନେ ରଖିବା ନିହାତି ଆବଶ୍ୟକ । ପଶ୍ଚିମ ଓଡ଼ିଶା କଥା କହିଲାବେଳେ, ଓଡ଼ିଶାର ମଧ୍ୟ ଭାଗ ବା ଦକ୍ଷିଣ ଭାଗ ବା ଅନ୍ୟ ଅଞ୍ଚଳମାନ ଯେ ସମୃଦ୍ଧ, ଏ ଭୁଲ୍ କାହା ମନରେ ରହିବା ଉଚିତ୍ ନୁହେଁ । ଓଡ଼ିଶାର ସମଗ୍ର ଅଞ୍ଚଳ ଅନଗ୍ରସର । ନିକଟରେ ଏ ଲେଖକଙ୍କର, କଟକ ଜିଲ୍ଲାର କାନ୍ତିଠାରେ ଆୟୋଜିତ ଏକ ଉତ୍ସବରେ କଳାହାଣ୍ଡିର ଲୋକସଭା ସଦସ୍ୟଙ୍କ ସହ ଯୋଗଦେବାର ସୁଯୋଗ ଜୁଟିଥିଲା । କଟକ ଜିଲ୍ଲାର ଅନ୍ଧକନ୍ଦ ଭିତରେ ଥିବା ଗାଁ ଗୁଡ଼ିକର ରାସ୍ତା ଅବସ୍ଥା ଦେଖି ମାନ୍ୟବର ସଦସ୍ୟ ଆଶ୍ଚର୍ଯ୍ୟ ପ୍ରକାଶ କରି କହିଥିଲେ; "ସତରେ, କଳାହାଣ୍ଡି ଲୋକେ ଏଭଳି ରାସ୍ତାଘାଟ ଦେଖିଲେ ବିଶ୍ୱାସ କରିବେ ନାହିଁ ଯେ କଟକ ଜିଲ୍ଲାର ଏଭଳି ଅବସ୍ଥା ।"

ଅର୍ଥାଭାବ ଦୃଷ୍ଟିରୁ ଓଡ଼ିଶାର ଉନ୍ନୟନ ନିଅଣ୍ଟିଆ ହୋଇପାରେ, ମାତ୍ର ଏହା ଯେପରି କୌଣସି ଆଞ୍ଚଳିକ ବୈଷମ୍ୟର କାରଣ ନ ହୁଏ, ସେ ଦିଗରେ ପ୍ରତିଟି ଓଡ଼ିଆ ଯତ୍ନଶୀଳ ହେବା ଦରକାର । ପଶ୍ଚିମ-ଓଡ଼ିଶା ଏକ ଅଞ୍ଚଳ ହୋଇପାରେ, କିନ୍ତୁ ଏହା ଯେ ଓଡ଼ିଶା ସେକଥା କି'ଣ କେହି ଭୁଲିଯିବା ଉଚିତ୍ ? ଆଜି ପଶ୍ଚିମ ଓଡ଼ିଶା ନାଆଁରେ ଯେଉଁ ଭାବଗତ ବିଦ୍ରୋହ ଓ ଅଭିମାନର ସ୍ୱର ଉଠିଛି, ତାହା ଆନ୍ଦୋଳନ ନ ହୋଇ ଏକ ଘରୁଆ କଥା ହୋଇଥାଇପାରେ, ହେଲେ ସେ ପ୍ରତି ଘରର ମୁରବିଙ୍କଠାରୁ ଆରମ୍ଭ କରି ସବୁ ସଦସ୍ୟ ସାଏଁ ସଚେତନ ହେବା ଆବଶ୍ୟକ ନୁହେଁକି ?

[ ଦୈନିକ 'ସମ୍ବାଦ' ତା ୨୩ ଡିସେମ୍ବର ୧୯୯୧ ସୌଜନ୍ୟରୁ ]

# ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ପୃଷ୍ଠପୋଷକ : କୃଷ୍ଣଚନ୍ଦ୍ର ଗଜପତି

ଶ୍ରୀ ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ)

ସ୍ୱର୍ଗତଃ ଗୋପାଳ ଚନ୍ଦ୍ର ପ୍ରହରାଜ ସ୍ୱତନ୍ତ୍ର ଉତ୍କଳର ନିର୍ମାତା, ପାରଳାର ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କୁ (୧୮୯୨-୧୯୭୪)ଯଥାର୍ଥତଃ 'ଉତ୍କଳ-ରାଜନ୍ୟ-ମୌଳି ମଣ୍ଡନ, ସକଳ-ଗୁଣ-ନିଧାନ, ଉତ୍କଳ-ସାହିତ୍ୟାର୍ଣ୍ଣବ- କର୍ଣ୍ଣଧାର' ଭାବେ ଅଭିହିତ କରିଯାଇ ଅଛନ୍ତି । କ୍ଷୁଦ୍ର ପାରଳା ଖେମୁଣ୍ଡି ରାଜ୍ୟର ରାଜା ହେଲେହେଁ ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ସାଧନ ଥିଲା ତାଙ୍କର ସ୍ୱପ୍ନ, ଏକାନ୍ତ କାମନା । ପାରଳା ଖେମଣ୍ଡି ତଥା ଓଡ଼ିଶାରେ ଶିକ୍ଷାର ପ୍ରସାର କ୍ଷେତ୍ରରେ ତାହାଙ୍କ ଭୂମିକା ନିଶ୍ଚିତ ଭାବେ ଉଲ୍ଲେଖ ଯୋଗ୍ୟ । ରାଜ୍ୟରେ କୃଷି, ଶିଳ୍ପର ଅଭିବୃଦ୍ଧି ଓ କ୍ରୀଡ଼ାର ପ୍ରସାର ଲାଗି ମଧ୍ଯ ସେ ଥିଲେ ପ୍ରଯତ୍ନଶୀଳ । ଶୈଶବରୁ ସେ ପାଶ୍ଚାତ୍ୟ ରୀତିରେ ପରିବର୍ଦ୍ଧିତ ହୋଇଥିଲେ ।। ଏଣୁ ସବୁକାର୍ଯ୍ୟରେ ଶୃଙ୍ଖଳା, ସତ୍ୟନିଷ୍ଠା ଓ ସମୟାନୁ ବର୍ତ୍ତିତାକୁ ସେ ଅନୁସରଣ କରୁଥିଲେ । ଏଥିସହ ତାହାଙ୍କ ଜୀବନ ଧାରାରେ ସମ୍ମିଶ୍ରିତ ହୋଇଥିଲା ପାରଂପରିକ ରାଜକୀୟ ମର୍ଯ୍ୟାଦା ବୋଧ ଓ ତତ୍କାଳୀନ ପରିସ୍ଥିତିର ସ୍ୱଦେଶାନୁରାଗ । ମାତ୍ର ସାହିତ୍ୟିକ ହେବାର ଅଭିଳାଷ ତାଙ୍କର ଆଦୌ ନଥିଲା । ତଥାପି ଓଡ଼ିଆ ସାହିତ୍ୟର ବିକାଶ ଓ ପ୍ରସାର ଲାଗି ସେ ଯାହା କରିଯାଇଛନ୍ତି ତାହା ନିଶ୍ଚିତ ଭାବେ ସ୍ମରଣୀୟ । ଏଥିରୁ ତାଙ୍କର ଉନ୍ନତ ରୁଚିବୋଧ, ସାହିତ୍ୟାନୁରାଗ ଓ ବଦାନ୍ୟତା ସହଜରେ ଅନୁମେୟ ।

□ ସାହିତ୍ୟିକ ହେବାର ଅଭିଳାଷ ତାଙ୍କର ଆଦୌ ନଥିଲା । ତଥାପି ଓଡ଼ିଆ ସାହିତ୍ୟର ବିକାଶ ଓ ପ୍ରସାର ଲାଗି ସେ ଯାହା କରିଯାଇଛନ୍ତି ତାହା ନିଶ୍ଚିତ ଭାବେ ସ୍ମରଣୀୟ । □

ଏକୋଇଶ ବର୍ଷ ବୟସରେ ୧୯୧୩ ଏପ୍ରିଲ ୨୬ ତାରିଖରେ ସେ କୋର୍ଟ ଅଫ ଓ୍ୱାର୍ଡସ୍ ଠାରୁ ରାଜ୍ୟଭାର ଗ୍ରହଣ କରିଥିଲେ । ଏହି ସମୟରେ ଗୋପବନ୍ଧୁଙ୍କ ପ୍ରତିଷ୍ଠିତ ସତ୍ୟବାଦୀ ବନ ବିଦ୍ୟାଳୟ ଓଡ଼ିଶାର ଜାତୀୟ ଜୀବନରେ ଏକ ନୂତନ ସ୍ପନ୍ଦନ ସୃଷ୍ଟି କରିଥାଏ । ମହାରାଜା ତାହାଙ୍କ ଅଭିଷେକ ଉତ୍ସବପାଳନ ଉପଲକ୍ଷେ ଏହି ବିଦ୍ୟାଳୟର ନିର୍ମାଣଲାଗି ପାଞ୍ଚଶତ ଟଙ୍କା ଦାନ କରିଥିଲେ । ୧୪.୬ ୧୩ରେ 'ଉତ୍କଳ ଦୀପିକା'କୁ ଲିଖିତ ଏକ ପତ୍ରରେ ଗୋପବନ୍ଧୁ ଏହା ସ୍ୱୀକାର କରିଅଛନ୍ତି । ସେହି ଅବକାଶରେ ଓଡ଼ିଶାର ପ୍ରଖ୍ୟାତ ଓ ପ୍ରାଚୀନ ଅନୁଷ୍ଠାନ ଉତ୍କଳ ସାହିତ୍ୟ ସମାଜକୁ ମଧ୍ୟ ସେ ଅର୍ଦ୍ଧଶତ ଟଙ୍କା ଦାନ କରିଥିଲେ । ସାହିତ୍ୟ ସମାଜର ତତ୍କାଳୀନ ସଂପାଦକ ମଧୁସୂଦନ ଦାସ ଉତ୍କଳ ଦୀପିକାର ୩୧-୫-୧୩ରେ ଏହା କୃତଜ୍ଞତାର ସହିତ ସ୍ୱୀକାର କରିଅଛନ୍ତି । ରାଜ୍ୟଭାର ଗ୍ରହଣ କଲାପରେ ସେ ପାରଳାଖେମଣ୍ଡିରେ ଶିକ୍ଷାର ପ୍ରସାର ଲାଗି ପ୍ରଭୂତ ଉଦ୍ୟମ କରିଥିଲେ । ତାହାଙ୍କ ଏହି ପ୍ରଚେଷ୍ଟା ଫଳରେ ପାରଳାର ସମସ୍ତ ଶିକ୍ଷାନୁଷ୍ଠାନର ସଂପ୍ରସାରଣ ଓ ଅଭିବୃଦ୍ଧି ସାଧିତ ହୋଇ ପାରିଥିଲା ଓ ଏଥିରେ ଦୁଇ ଲକ୍ଷ ଟଙ୍କାରୁ ଊର୍ଦ୍ଧ୍ୱ ଅର୍ଥ ବ୍ୟୟିତ ହୋଇଥିଲା (୧) ।

କୃଷ୍ଣଚନ୍ଦ୍ର ଗଜପତିଙ୍କ ରାଜ୍ୟଭାର ଗ୍ରହଣର ପରବର୍ତ୍ତୀ ବର୍ଷ ଓଡ଼ିଶାର ରାଜନୈତିକ ତଥା ସାଂସ୍କୃତିକ ଜୀବନ କ୍ଷେତ୍ରରେ ଏକ ସ୍ମରଣୀୟ

ବର୍ଷ । ଏହି ବର୍ଷ ଡିସେମ୍ବର ମାସରେ ପାରଳା ଖେମୁଣ୍ଡିଠାରେ ଉତ୍କଳ ସମ୍ମିଳନୀର ଦଶମ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଏହା ମହାରାଜାଙ୍କ ସାଗ୍ରହ ଆମନ୍ତ୍ରଣ ଫଳରେ ଯେ ହୋଇଥିଲା, ଏହା କହିବା ଅନାବଶ୍ୟକ । ଏହି ଅଧିବେଶନରେ ସଭାପତିତ୍ୱ କରିଥିଲେ କନିକାର ରାଜା ରାଜେନ୍ଦ୍ରନାରାୟଣ ଭଞ୍ଜଦେଓ ... ମହାରାଜା କୃଷ୍ଣଚନ୍ଦ୍ର ଏହି ସମୟରୁ ଦେଶମିଶ୍ରଣ ଆନ୍ଦୋଳନରେ ପ୍ରତ୍ୟକ୍ଷ ଭାବରେ ଯୋଗ ଦେଇଥିଲେ । ୧୯୩୬ ମସିହାରେ ତାଙ୍କର ସ୍ୱପ୍ନ ସଫଳ ହୋଇଥିଲା । ସମ୍ଭବତଃ ସେହି ଉପଲକ୍ଷେ ସେ ସେହିବର୍ଷ ଗୋପାଳପ୍ରହରାଜଙ୍କ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର ୫ମ ଖଣ୍ଡର ମୁଦ୍ରଣ ଲାଗି ପାଞ୍ଚ ହଜାର ଟଙ୍କା ଦାନ କରିଥିଲେ । କୃତଜ୍ଞତାର ନିଦର୍ଶନ ସ୍ୱରୂପ ସଂକଳୟିତା ଏହି ୫ମ ଖଣ୍ଡକୁ ମହାରାଜାଙ୍କ ପବିତ୍ର ନାମରେ ଉତ୍ସର୍ଗ କରିଯାଇ ଅଛନ୍ତି ।

ରାଜ୍ୟଭାର ଗ୍ରହଣ କରିବା ପରେ ପ୍ରାୟ ତ୍ରିଂଶ ବର୍ଷ ମଧ୍ୟରେ ମହାରାଜା ଓଡ଼ିଶାର ବହୁ ଲେଖକଙ୍କର ଗ୍ରନ୍ଥ ପ୍ରକାଶନ ଲାଗି ପ୍ରଚୁର ଅର୍ଥ ଦାନ କରିଥିବା ଜଣାଯାଏ । ଏ ବିଷୟରେ ଆମ ପ୍ରକୃତର ଅଭିପ୍ରାୟ ତାଙ୍କର ନଥିଲା । ସାହିତ୍ୟର ଉନ୍ନତି ଓ ଲେଖକମାନଙ୍କୁ ଉତ୍ସାହ ଦାନ ଉଦ୍ଦେଶ୍ୟରେହିଁ ସେ ଅକାତର ଭାବେ ଏପରି ଅର୍ଥଦାନ କରିଯାଇ ଅଛନ୍ତି ।

ସ୍ୱତନ୍ତ୍ର ଓଡ଼ିଶା ରାଜ୍ୟ ଗଠନ ଥିଲା ତାଙ୍କର ଏକାନ୍ତ ଅଭିଳାଷ । ଓଡ଼ିଆ ଭାଷାଭାଷୀ ବିଚ୍ଛିନ୍ନାଞ୍ଚଳର ଅସୁବିଧା ବିଷୟ ସେ ଉତ୍ତମ ରୂପେ ଅବହିତ ଥିଲେ । ଏହି ଅଞ୍ଚଳର ଅଧିବାସୀଗଣ ସେତେବେଳେ ଓଡ଼ିଆ ଭାଷା ଶିଖିବା ଲାଗି ଉପଯୁକ୍ତ ସୁବିଧା ପାଉନଥିଲେ । ଦକ୍ଷିଣାଞ୍ଚଳ ଅପେକ୍ଷା ଉତ୍ତରାଞ୍ଚଳରେ ଏହି ଅବସ୍ଥା ଥିଲା ଅଧିକ ଉତ୍କଟ । ମହାରାଜା ସେଥିପାଇଁ ସିଂହଭୂମ ଅଞ୍ଚଳରେ ଓଡ଼ିଆ ଶିକ୍ଷାର ପ୍ରଚାର ନିମନ୍ତେ ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟଙ୍କୁ ପାଞ୍ଚହଜାର ଟଙ୍କା ଦାନ କରିଥିଲେ ।

ପାରଳା ଖେମୁଣ୍ଡି ଅଞ୍ଚଳର କବି ଓ ଲେଖକମାନଙ୍କ ରଚନାର ପ୍ରକାଶ ନିମିତ୍ତ ସେ ପୂର୍ବରୁ ସ୍ଥାପିତ ଗଜପତି ପ୍ରେସର ସଂପ୍ରସାରଣ ସାଧନ କରାଇଥିଲେ । ଏହି ପ୍ରେସର ମୁଦ୍ରାକର ଭାବେ ସେ ସୁଯୋଗ୍ୟ ବନାୟକ ପଟ୍ଟନାୟକଙ୍କୁ ନିଯୁକ୍ତ କରିଥିଲେ । ପୂର୍ବରୁ ଶ୍ୟାମ ସୁନ୍ଦର ରାଜଗୁରୁଙ୍କ ଦ୍ୱାରା ଏହି ପ୍ରେସ ପରିଚାଳିତ ହେଉଥିଲା ଓ ତାହାଙ୍କ ସଂପାଦନାରେ 'ଗଞ୍ଜାମ ନିଉଜ' ନାମକ ଏକ ସାପ୍ତାହିକ ଇଂରାଜୀ ପତ୍ରିକା ଏହି ପ୍ରେସରୁ ପ୍ରକାଶ ପାଉଥିଲା । କହିବା ଅନାବଶ୍ୟକ, ଏହି ପ୍ରେସରେ ମୁଦ୍ରିତ ହୋଇ ବହୁ ଉପାଦେୟ ଗ୍ରନ୍ଥ ପ୍ରକାଶ ପାଇଥିଲା । ୧୮୯୦ ବେଳକୁ ଏହି ପ୍ରେସ୍ ସ୍ଥାପିତ ହୋଇଥିବା ଅନୁମେୟ । କୃଷ୍ଣଚନ୍ଦ୍ର ରାଜ୍ୟଭାର ଗ୍ରହଣ ପୂର୍ବରୁ ଏହି ପ୍ରେସ୍‌ରୁ ନିମ୍ନୋକ୍ତ ଉପାଦେୟ ଗ୍ରନ୍ଥ ମୁଦ୍ରିତ ହୋଇ ପ୍ରକାଶ ପାଇଥିବା ଜଣାଯାଏ ।

୧୮୯୮–ଚାଳ ସଙ୍ଗୀତର ସଂଗ୍ରହ- ପଦ୍ମନାଭ ଦେବ
୧୯୦୦–ଗୀତ ରତ୍ନାବଳୀ- ଗୌରଚନ୍ଦ୍ର ଗଜପତି
୧୯୦୧– ପ୍ରହ୍ଲାଦ ନାଟକ- ପଦ୍ମନାଭ- ନାରାୟଣ ଦେବ
୧୯୦୨– ନବାନୁରାଗ- ଗୋପାଳକୃଷ୍ଣ
କଳା-ବତୀ-(ଉପନ୍ୟାସ) ଅପର୍ଣ୍ଣା ପଣ୍ଡା
୧୯୦୩– ଗୋପାଳକୃଷ୍ଣ ପଦ୍ୟାବଳୀ-
୧୯୧୦–ଗୌରହରି ପଦ୍ୟାବଳୀ-
୧୯୧୨– ହରିବନ୍ଧୁ ପଦ୍ୟାବଳୀ-

ମହାରାଜାଙ୍କ ରାଜପଦ ପ୍ରାପ୍ତି ପରେ ଯେଉଁ ସବୁ ଉଲ୍ଲେଖଯୋଗ୍ୟ ପୁସ୍ତକ ଏହି ପ୍ରେସରୁ ପ୍ରକାଶିତ ହୋଇଥିଲା ତନ୍ମଧ୍ୟରୁ ଗଜପତି ନାରାୟଣ ଦେବ (୧୭୬୦-୧୮୦୦)ଙ୍କ 'ବୃନ୍ଦାବନ ବିହାର' (୧୯୧୭), ଅପର୍ଣ୍ଣା ପଣ୍ଡାଙ୍କ 'ଜଗମୋହନ ବା ତତ୍ତ୍ୱବୋଧନ' (୧୯୨୧', 'ଗୌରଚନ୍ଦ୍ର ଗଜପତିଙ୍କ 'ଧ୍ରୁବ ନାଟକ' (୧୯୨୨), ପ୍ରଭୃତର ନାମ ଉଲ୍ଲେଖଯୋଗ୍ୟ । ଏତଦ୍‌ବ୍ୟତୀତ ଗଜପତି ପ୍ରେସରେ ମୁଦ୍ରିତ ହୋଇ ପ୍ରକାଶ ପାଇଥିଲା ପଣ୍ଡିତ ରାମ ଶାସ୍ତ୍ରୀଙ୍କ ଲିଖିତ ସଂସ୍କୃତ ନାଟକ 'ମଧୁର ଗୁଞ୍ଜନ, ଶ୍ୟାମ ସୁନ୍ଦର ରାଜ ଗୁରୁଙ୍କ Teastos and tests of Oriyas ଓ ଗୋପାଳକୃଷ୍ଣ, ଗୌରହରି, ହରିବନ୍ଧୁ ପ୍ରଭୃତି ପାରଳାରେ ଭୂମିଷ୍ଠ ହୋଇଥିବା କବିମାନଙ୍କ ରଚନାବଳୀର ପରିବର୍ଦ୍ଧିତ ସଂସ୍କରଣ ସମୂହ । ଗୋପାଳ କୃଷ୍ଣ ଗୌରହରି ଓ ହରିବନ୍ଧୁଙ୍କ ରଚନା ବଳୀର ପରିବର୍ଦ୍ଧିତ ସଂସ୍କରଣ ଯଥାକ୍ରମେ ୧୯୧୯, ୧୯୨୬ ଓ ୧୯୩୩ରେ ପ୍ରକାଶ ପାଇଥିଲା ।

ମହାରାଜାଙ୍କ ଉଦାରତା ଓ ବଦାନ୍ୟତା ଫଳରେହିଁ ଓଡ଼ିଆ ଭାଷା-ସାହିତ୍ୟର ଏକ ଅମୂଲ୍ୟ ଗ୍ରନ୍ଥର ରଚନା ଓ ପ୍ରକାଶନ ସମ୍ଭବ ହୋଇ ପାରିଥିଲା । ଏହା ହେଉଛି ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମାଙ୍କ ସଙ୍କଳିତ ଓଡ଼ିଆ ଶବ୍ଦ 'ତତ୍ତ୍ୱବୋଧ ଅଭିଧାନ' । ୧୯୧୬ରେ ଏହା ପ୍ରକାଶ ପାଇଥିଲା । ଏହାର ମୁଦ୍ରଣ ବ୍ୟୟ ଲାଗି ଆବଶ୍ୟକ ହେଉଥିବା ତିନି ହଜାର ଟଙ୍କା ମହାରାଜା ପ୍ରଦାନ କରିଥିଲେ । ପାରଳାର ଅଧିବାସୀ ମହାନ ପଣ୍ଡିତ, ଏକନିଷ୍ଠ ଗବେଷକ ଗୋପୀନାଥ ନନ୍ଦ ଏକକ ଉଦ୍ୟମରେ ଏହି ଦୁରୂହ କାର୍ଯ୍ୟ ସଂପାଦନ କରୁଥିବା ବିଷୟ ଅବଗତ ହୋଇ ତାହାଙ୍କ ସୁବିଧା ଲାଗି ମହାରାଜା ପଣ୍ଡିତଙ୍କୁ କଲେଜରୁ ୬ମାସ ଲାଗି ଅବସର ପ୍ରଦାନ କରିଥିଲେ ।

ଓଡ଼ିଆ ସାହିତ୍ୟର ପ୍ରଥମ ଜୀବନ କୋଷ ଜଗବନ୍ଧୁ ସିଂହଙ୍କ 'ପ୍ରାଚୀନ ଉତ୍କଳ' ମଧ୍ୟ ମହାରାଜାଙ୍କ ଆର୍ଥିକ ସାହାଯ୍ୟ ଫଳରେ ମୁଦ୍ରିତ ହୋଇ ୧୯୨୯ରେ ଲୋକ ଲୋଚନକୁ ଆସିବା ସମ୍ଭବ ହୋଇଥିଲା । ଏତଦ୍‌ବ୍ୟତୀତ ଅଦ୍ୱୈତ ଚରଣ ମହାନ୍ତିଙ୍କ ବନ୍ଦୀ ଓଡ଼ିଆ (ପ୍ରଥମ ପ୍ରକାଶ ୧୯୪୧),

ନକ୍ଷତ୍ର ନିର୍ଣ୍ଣୟ, କବିତା କଳିକା, ବୈଷ୍ଣବ କବି ଅପର୍ଣ୍ଣା ପଣ୍ଡାଙ୍କ ରାଧାକୃଷ୍ଣ ଲୀଳା ସଂକଳିତ ଗୀତାବଳୀର ମୁଦ୍ରଣ ଓ ନାରାୟଣ ଗଜପତିଙ୍କ ବୃନ୍ଦାବନ ଚନ୍ଦ୍ର ବିହାର, ଓ ପଦ୍ମନାଭ ଗଜପତିଙ୍କ "ତାଳ ସର୍ବସାର ସଂଗ୍ରହ ପ୍ରଭୃତିର ପୁନର୍ମୁଦ୍ରଣ ତାହାଙ୍କ ସାହିତ୍ୟ ପୃଷ୍ଠପୋଷକତାର ନିଦର୍ଶନ । ଜୀବନର ଶେଷ ପର୍ଯ୍ୟାୟରେ (୧୯୫୦-୭୪) ମହାରଜା ସମ୍ଭବତଃ ବ୍ୟକ୍ତିଗତ କାରଣରୁ ରାଜନୀତି ଠାରୁ ଦୂରରେ ରହି ଏକପ୍ରକାର ଉଦାସୀନ, ନିଷ୍କ୍ରିୟଭାବେ ଓ ଓଡ଼ିଶାରେ ଶିକ୍ଷା, କୃଷି, ଶିଳ୍ପ, ସାହିତ୍ୟ ପ୍ରଭୃତିର ପ୍ରସାର ଲାଗି ପ୍ରାୟ ଅର୍ଦ୍ଧଶତାବ୍ଦୀ ବ୍ୟାପୀ ତାହାଙ୍କ ପ୍ରୟାସ ଯେ ଆଦର୍ଶ ସ୍ଥାନୀୟ ଏହା କହିବା ଅନାବଶ୍ୟକ । * ।

୧) ପାରଳା ପ୍ରତିଭା - ପୃ ୨୪ — ଶ୍ରୀ ବିଷ୍ଣୁ ମୋହନ ମହାନ୍ତି ।

୨) ପ୍ରବନ୍ଧ ପ୍ରସ୍ତୁତି ଲାଗି ବିଷ୍ଣୁ ଚରଣ ମହାନ୍ତିଙ୍କ 'ପାରଳା ପ୍ରତିଭା' ଓ ଶ୍ରୀଧର ମହାପାତ୍ରଙ୍କ ଓଡ଼ିଆ ପ୍ରକାଶନ ଓ ପ୍ରସାରଣ ଇତିହାସ ପୁସ୍ତକର ସାହାଯ୍ୟ ନିଆ ଯାଇଅଛି ।



# ସ୍ୱାଭିମାନୀ ଗଜପତି

☐ ଡକ୍ଟର ଭବଗ୍ରାହୀ ମିଶ୍ର

☐ ଯଦି "ପୁନର୍ଜନ୍ମ ଥାଏ", ତେବେ ଗଜପତି ଶ୍ରୀ କୃଷ୍ଣଚନ୍ଦ୍ର ପୁଣି ଥରେ ଜନ୍ମ ନେଲେ ବୋଧହୁଏ ଓଡ଼ିଶାର, ଓଡ଼ିଆ ଭାଷୀଙ୍କର ସ୍ୱାଭିମାନ ଫେରି ଆସିପାରେ........ ☐

ଇତିହାସ ପାଶ୍ଚାତ୍ୟ ଜଗତରୁ ଜନ୍ମଲାଭ କରି ସମଗ୍ର ବିଶ୍ୱକୁ କରାୟତ୍ତ କରି ସାରିଛି । ଏଇ ଇତିହାସର ଧାରା କି ବାଚାଳ । କ୍ଷମତା, ଅର୍ଥଶକ୍ତି ହିଁ ଏବେ ଇତିହାସର ଧାରାକୁ କରି କବଳିତ କରି ଆସିଛି । ସେ ଧାରାରେ ଯେଉଁ ପରିବର୍ତ୍ତନର ସୂଚନା ମିଳୁଛି, ତା'ହାର ପ୍ରଭାବ ଭାରତ ଭୂମିରେ ପଡ଼ିବାକୁ କେତେକାଳ ଲାଗିବ, ତାହା କହିବା ଦୁଷ୍କର ।

ବିଶ୍ୱ ରାଜନୀତିରେ "ସଂପ୍ରସାରଣବାଦ" ଆଉ କାର୍ଯ୍ୟ କରୁନାହିଁ । ଉପନିବେଶବାଦର ସଂପ୍ରସାରଣ କ୍ରମେ ଭାଙ୍ଗି ଯାଉଛି "ରାଷ୍ଟ୍ରୀୟତା-ବାଦ"ର ଜନ୍ମ ଏଇ ଶତାବ୍ଦୀରେ ଘଟିଲା । କ୍ରମେ ଏଇ "ରାଷ୍ଟ୍ରୀୟତା-ବାଦ"ର ଜନ୍ମ ଏଇ ଶତାବ୍ଦୀରେ ଘଟିଲା । କ୍ରମେ ଏଇ "ରାଷ୍ଟ୍ରୀୟତାବାଦ" ଭାଙ୍ଗି ପଡୁଛି—କ୍ଷୁଦ୍ର କ୍ଷୁଦ୍ର ଭାଷା ଭିତ୍ତିକ, ଏକ ଅଲିଖିତ ସଂସ୍କୃତି ଭିତ୍ତିକ ନୂତନ ଗଣତାନ୍ତ୍ରିକ ରାଷ୍ଟ୍ରମାନେ ଏବେ ଜନ୍ମଲାଭ କରୁଛନ୍ତି (ସୋଭିଏଟ୍ ୟୁନିୟନ, ଯୁଗୋସ୍ଲୋଭିଆର ଉଦାହରଣ) ଅର୍ଥାତ୍ "ରାଜା ମହାରାଜାମାନଙ୍କର" ରାଜ୍ୟର ସର୍ମ୍ପ୍ରକ୍ଷଣରେ ଯେଉଁ "ରାଷ୍ଟ୍ରୀୟତାବାଦ" ଜଗତବାସୀଙ୍କୁ ଗତ ଅର୍ଦ୍ଧଶତାବ୍ଦୀ ଭିତରେ ଆକୃଷ୍ଟ କରୁଥିଲା—ସେଇ-ମାନେ ଏବେ "ଭାଷାଭିତ୍ତିକ" "ଧର୍ମଭିତ୍ତିକ" "ଅଲିଖିତ ସଂସ୍କୃତି" (ଲୋକ-ସଂସ୍କୃତି) ଭିତ୍ତିକ ନୂତନ "ରାଷ୍ଟ୍ର" ଗଠନରେ ବ୍ରତୀ ହେଉଛନ୍ତି ।

ଅର୍ଥାତ୍ ଏବେ "ଭାଷା" ରାଷ୍ଟ୍ରୀୟତାର ଏକ ନୂତନ ପରିମାପକ ହେବାକୁ ଯାଉଛି । ଏଇ ପରିପ୍ରେକ୍ଷୀରେ ମନେ ହେଉଛି, ଯେ କୌଣସି ବ୍ୟକ୍ତି ବା ଗୋଷ୍ଠୀ ପକ୍ଷରେ ନିଜର "ସ୍ୱାଭିମାନ"ର ପରିମାପକ ହେଉଛି "ଭାଷା" (ଏହା ମୁଖ୍ୟତଃ କଥିତ ) । ସେହି ଭାଷାକୁ ବଞ୍ଚାଇବାକୁ ତା'ରି ଭିତ୍ତିରେ ରାଜ୍ୟ ଶାସନର ଅଞ୍ଚଳ ତିଆରି କରିବାକୁ ବ୍ରିଟିଶ ଶାସନ କାଳରେ ନିର୍ଭୀକତାର ସହ କୂଟନୀତି ପ୍ରୟୋଗ କରି ଯେଉଁ କେତେ ଜଣ ଦୂରଦୃଷ୍ଟି ସମ୍ପନ୍ନ ବ୍ୟକ୍ତି ବିଶେଷ "ଓଡ଼ିଶାରେ ରାଜନୈତିକ ମାନଚିତ୍ର ତିଆରି କରିବାରେ ସଫଳ କଳାକାର ହୋଇ ପାରିଥିଲେ, ସେମାନଙ୍କ ଭିତରେ ଗଜପତି ଶ୍ରୀ କୃଷ୍ଣଚନ୍ଦ୍ର ଅନ୍ୟତମ ଥିଲେ ଓ ସେ ହିଁ ଥିଲେ ବ୍ରିଟିଶ ଶାସନ କାଳୀନ ଇତିହାସରେ "ଓଡ଼ିଶା"ର (ସେତେବେଳକୁ ପ୍ରଦେଶ ବା, ରାଜ୍ୟ ହୋଇନି—ଯଦିଓ ମଧୁବାବୁ "ଓଡ଼ିଆ ନେସନ୍"ର ସ୍ୱପ୍ନ ଦେଖୁଥିଲେ) ପ୍ରଥମ ପ୍ରଧାନମନ୍ତ୍ରୀ ହୋଇ ପାରିଥିଲେ ।

ଇତିହାସକାରମାନେ କହନ୍ତି (ଓ ବୋଧହୁଏ ଜାଣନ୍ତି) ଯେ ୧୮୦୩ରେ ବ୍ରିଟିଶ ଶାସନଭୁକ୍ତ ହୋଇଥିଲା, ସେ କାଳର ଓଡ଼ିଶା । କିନ୍ତୁ ଶହେ ବର୍ଷ ପୂରୁ ନ ପୂରୁଣୁ ୧୯୦୩ ବେଳକୁ "ଭାଷାଭିତ୍ତିକ" ଆନ୍ଦୋଳନର ଜନ୍ମ ଓ ସେଇଠୁ ଓଡ଼ିଆଙ୍କୁ ଓ ଓଡ଼ିଶାକୁ "ବିଂଶ ଶତାବ୍ଦୀର"

"ଆଧୁନିକତା" (କୃଷି, ବିଜ୍ଞାନ, ସାହିତ୍ୟ, ରଙ୍ଗମଞ୍ଚ ଇତ୍ୟାଦି ଇତ୍ୟାଦି) ସହିତ ସଂଯୁକ୍ତ କରିବାରେ ଜଣେ ବୈପ୍ଳବିକ ରାଜା ଯେଉଁ "ସ୍ୱାଭିମାନ"ର ସୂଚନା ଦେଇଥିଲେ, ଭାରତୀୟ ଗଣତନ୍ତ୍ରର ଉତ୍ଥାନ ପତନର ୪୫ ବର୍ଷର ଅବଧି ସୀମା ଭିତରେ ସେପରି "ସ୍ୱାଭିମାନୀ" ଗଣତାନ୍ତ୍ରିକ-ଶାସକଟିଏ ଜାତିକୁ ବାହାରି ପାରିଲେ ନାହିଁ । ମନେ ହେଉଛି "ସାମନ୍ତ-ବାଦ"ର ଭବିଷ୍ୟତ ଯେତେବେଳେ ଗଣତନ୍ତ୍ରରେ ରୂପାନ୍ତରିତ ହେବାର ଉପକ୍ରମ ସମଗ୍ର ବିଶ୍ୱ ରାଜନୀତିରେ କାର୍ଯ୍ୟ ବିସ୍ତାର କରି ଆସୁଥିଲା, ସେତିକିବେଳେ ଘନ ଜଙ୍ଗଲ ପରିବେଷ୍ଟିତ "ଓଡ଼ିଶା ଭୂମିରେ" (ସେ କାଳର ଓଡ଼ିଶା) ଯଦି କେହି ଓଡ଼ିଆ ନିଜର "ଭାଷା" "ସାହିତ୍ୟ' ଓ "ସଂସ୍କୃତିକୁ" ରୂପାନ୍ତରିତ କରିବା ପାଇଁ ସ୍ୱପ୍ନ ଦେଖିଥିଲେ, "ସେ ହେଉଛନ୍ତି ଅନ୍ୟମାନଙ୍କ ମଧ୍ୟରେ ଗଜପତି ଶ୍ରୀକୃଷ୍ଣଚନ୍ଦ୍ର" । ଏବେ "ଅର୍ଥର ପ୍ରାବଲ୍ୟ"ରେ ଯୋଜନାର ନକ୍ସାରେ ବହୁ "ବିକାଶମୂଳକ କାର୍ଯ୍ୟକ୍ରମ" ତିଆରି ହେଉଛି—କିନ୍ତୁ ଏକ ଜାତିକୁ (ଭାଷାଭିତ୍ତିକ) ନିଜର ସଂସ୍କୃତିର ବୁନିୟାଦି ଉପରେ ପ୍ରତିଷ୍ଠା ଦେଇ ଏକ "ରାଜନୈତିକ ଶାସନାଧୀନ" କରିବା ପାଇଁ ଗୋଲଟେବୁଲ ବୈଠକରେ ଯୋଗ ଦେବାକୁ ସାହସ କରି ସେ କାଳର ପ୍ରତିପତ୍ତିଶୀଳ ବ୍ରିଟିଶ ଶାସନାଧୀଶ-ମାନଙ୍କୁ ଯୁକ୍ତି ବଳରେ, ପ୍ରମାଣ ବଳରେ ମନାଇ ପାରିବାର ବ୍ୟକ୍ତିତ୍ୱ କେବଳ ଏକ "ଭାଷା ପ୍ରୀତି"ର ସ୍ୱାଭିମାନ ଛଡ଼ା କଣ ହୋଇପାରେ ?

କିନ୍ତୁ ଏବର ପ୍ରଗତିଧର୍ମୀ ରାଜନୀତିର ବଳୟ ଭିତରେ ରହି ଇତିହାସର ନିର୍ଜୀବ ପୃଷ୍ଠା ଗଜପତି ଶ୍ରୀକୃଷ୍ଣଚନ୍ଦ୍ରଙ୍କୁ ଯେପରି ଧରି ରଖି ପାରିବା କଥା, ତାହା ପାରିନାହିଁ । ଦୁଃଖ ଓ ପରିତାପର ବିଷୟ ଯିଏ ଏହି "ଭାଷାଭିତ୍ତିକ" ରାଜ୍ୟ ଗଠନର ପ୍ରାଣ ପ୍ରତିଷ୍ଠାତା, ତାଙ୍କୁ କେବଳ ଶ୍ରଦ୍ଧାର ସହିତ ଜନ୍ମ ଦିବସରେ ସ୍ମରଣ କରିବା ଛଡ଼ା, ଏଭଳି ବ୍ୟକ୍ତିଙ୍କୁ ଓଡ଼ିଶାର ବର୍ତ୍ତମାନର ୧୩ଟି ଜିଲ୍ଲାର ପ୍ରାୟ ୪୮୦୦୦ ଗ୍ରାମରେ ବଞ୍ଚେଇ ରଖିବାର ପ୍ରୟାସ କରିପାରି ନାହାନ୍ତି--ଓଡ଼ିଶାର ଅଗଣିତ ଜନତା, ଓଡ଼ିଶାର ପ୍ରଶାସକ ଓ ରାଜନୀତିଜ୍ଞଗଣ । ଅନେକେ ଗଜପତିଙ୍କ ନାମ ମଧ୍ୟ ହୁଏତ ଜାଣି ନଥିବେ ।

ଏ ଦିଗରେ ଇତିହାସ ଚିରଦିନ ନିଷ୍ଠୁର ଓ ଏହି ନିଷ୍ଠୁରତାର ଉଦାହରଣ ଏବର ଓଡ଼ିଶା । ରାଷ୍ଟ୍ରୀୟ ମାନଚିତ୍ରରେ ଏବେ ବି ଏକ ଦୁର୍ବଳ, ଅବହେଳିତ ଦାସ ମନୋଭାବ ସମ୍ପନ୍ନ ବ୍ୟକ୍ତିମାନଙ୍କର ଚରା ଭୂଇଁ । ତେବେ ଗଜପତି ଶ୍ରୀ କୃଷ୍ଣଚନ୍ଦ୍ରଙ୍କର ସ୍ୱପ୍ନ ସାକାର ହେଲା କେବେ ? ସେ "ଓଡ଼ିଶାର" ପ୍ରଥମ ପ୍ରଧାନମନ୍ତ୍ରୀ ଥିଲେ । ଏ ଯାବତ୍ ତାଙ୍କପରି କିନ୍ତୁ "ସ୍ୱାଭିମାନୀ" ଓଡ଼ିଆ ଶାସକଟିଏ ଏ ରାଜ୍ୟର ଲୋକେ ସୃଷ୍ଟି କରି ପାରିଲେ ନାହିଁ । ତାହା ହିଁ ଇତିହାସର ବିଡ଼ମ୍ବନା । ତେଣୁ ଗଜପତି ଶ୍ରୀ କୃଷ୍ଣଚନ୍ଦ୍ରଙ୍କର ଆତ୍ମା ହୁଏତ ତାଙ୍କର ବଂଶଧରମାନଙ୍କର, ତଥାକଥିତ ଇତିହାସକାରମାନଙ୍କର ଦୈନ୍ୟକୁ ଦେଖି "ଉପହାସ" କରୁଥିବ ? ଯଦି "ପୁନର୍ଜନ୍ମ" ଥାଏ, ତେବେ ଗଜପତି ଶ୍ରୀକୃଷ୍ଣଚନ୍ଦ୍ର ପୁଣି ଥରେ ଜନ୍ମ ନେଲେ ବୋଧହୁଏ ଓଡ଼ିଶାର, ଓଡ଼ିଆ ଭାଷୀଙ୍କର ସ୍ୱାଭିମାନ ଫେରି ଆସିପାରେ—କାର୍ଯ୍ୟକ୍ରମରେ ଭାଷଣରେ ବା ପରିପ୍ରଶ୍ନରେ ନୁହେଁ !







# ସାର୍ଥକ ସନ୍ତାନ ସମର୍ଥ ଶାସକ ଯଥାର୍ଥ ସେବକ ଶ୍ରୀ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି

ଅଧ୍ୟାପକ ଧୀରେନ୍ଦ୍ର ନାଥ ଶତପଥୀ

ରାଜବଂଶରେ ଜନ୍ମଲାଭ କରିଥିବା ବହୁ ଯୁବକଙ୍କ ବିଳାସ ଓ ବୈଭବ-ର ଉତ୍ତାଳ ତରଙ୍ଗରେ ଭାସମାନ ଆନନ୍ଦ ଆସ୍ୱାଦନରେ ବିଭୋର ହୁଅନ୍ତି । ଏକପତ୍ନୀବ୍ରତ ଅବଲମ୍ବନ କରିବା ରାଜକୁଳରେ ଜନ୍ମଲାଭ କରିଥିବା ଯୁବକମାନଙ୍କ କ୍ଷେତ୍ରରେ ଏକ ବିଶେଷ ବ୍ୟତିକ୍ରମ । ପରନ୍ତୁ ଆମମାନଙ୍କର ସଦା ସ୍ମରଣୀୟ ବରେଣ୍ୟ ଗଜପତି କୃଷ୍ଣଚନ୍ଦ୍ର ବିପତ୍ନୀକ ହୋଇ ମଧ୍ୟ ଯୌବନକୁ ବିଳାସ ବିଭୋର କରି ଉପଭୋଗ ନିମନ୍ତେ ବ୍ୟଗ୍ର ହୋଇନାହାନ୍ତି । ପତ୍ନୀ ବିୟୋଗର ବହୁଦିନ ପରେ ଗଜପତି ଟାଟା ଚକ୍ରଧରପୁର ପ୍ରଭୃତି ଅତିକ୍ରମ କରି ରେଳଯାତ୍ରା କରୁଥିବା ସମୟରେ ହଠାତ୍ ଦୁଇବୁନ୍ଦା ଲୁହ କାହାକୁ ନ ଜଣାଇଲା ପରି ପୋଛି ଦେଲେ । କିନ୍ତୁ ସୁଚତୁର ସହଯାତ୍ରୀ ସତ୍ୟନାରାୟଣ ରାଜଗୁରୁ ବ୍ୟଥିତ ହୋଇ ପ୍ରଶ୍ନ କଲେ-ଏ ଅହେତୁକ ଅଶ୍ରୁର କାରଣ । ଭାବବିହ୍ୱଳ କଣ୍ଠରେ ସେଇଠି ଗଜପତି କହିଲେ, ଏଇ ନିକଟବର୍ତ୍ତୀ ସୁଣ୍ଡିହା ରାଜକେମାଙ୍କର ମୋ ସହିତ ଦ୍ୱିତୀୟ ବିବାହର ପ୍ରସ୍ତାବ ମୁଁ ପାଇଥିଲି । କିନ୍ତୁ ବନ୍ଦିନୀ ଉତ୍କଳମାତାକୁ ଅବହେଳିତା କରି ସେ ପ୍ରସ୍ତାବ ଗ୍ରହଣ କରିପାରିଲି ନାହିଁ । ପରେ ଶୁଣିଲି ସେ ନବଯୁବତୀ ଜଣେ ସାଧାରଣ ସାମନ୍ତ ବୃଦ୍ଧ ଶାସକଙ୍କର ଏକବିଂଶତମା ପତ୍ନୀ ଭାବରେ ପ୍ରବଳ ଅନିଚ୍ଛା ସତ୍ତ୍ୱେ ଯିବାକୁ ବାଧ୍ୟ ହେଲେ । ଆଜି ସେ କଥା ମନେ ପଡ଼ି ସ୍ୱାଭାବିକ ବ୍ୟଥା ଏ ଅଶ୍ରୁର କାରଣ ହେଲା । ଏକଥା ଜାଣିବା ପରେ ଗଜପତି କୃଷ୍ଣଚନ୍ଦ୍ରଙ୍କର ହୃଦୟ କିପରି କୋମଳ ପ୍ରୀତି ପରାୟଣ,ପର ଦୁଃଖ-ସମ୍ବେଦନଶୀଳ ତାହା ସ୍ପଷ୍ଟ ହୋଇଯାଏ । ଯେଉଁ କୃଷ୍ଣଚନ୍ଦ୍ର ଗଜପତି ମାଡ୍ରାସ ପ୍ରେସିଡେନ୍ସିର (Madras Presidency) ଗଭର୍ଣ୍ଣର ଜେନେରାଲଙ୍କୁ ସାକ୍ଷାତ କରିବାକୁ ଯାଇ ଠିକ୍ ସମୟରେ ସାକ୍ଷାତ ନ ହେବାରୁ ଅସନ୍ତୋଷ ପ୍ରକାଶ କରି ଫେରି ଆସିଥିଲେ ସେହି ଉଦାର ଗମ୍ଭୀର ବ୍ୟକ୍ତି ଗୋଟିଏ ଲାବଣ୍ୟମୟୀ ନବ ଯୁବତୀର ସନ୍ତାପ ସ୍ମରଣରେ ବିଗଳିତ । ସଂସ୍କୃତରେ କଥାଟିଏ ଅଛି:— ଶାସକ ପ୍ରୟୋଜନ ହେଲେ ବଜ୍ରଠାରୁ କଠିନ ଏବଂ ଆବଶ୍ୟକ ସ୍ଥଳେ କୁସୁମଠାରୁ ମଧ୍ୟ କୋମଳ ହେବା ବିଧେୟ । ତାହାର ଯଥାର୍ଥ ପ୍ରତିନିଧି ଅମର ମହାରାଜା କୃଷ୍ଣଚନ୍ଦ୍ର ଗଜପତି ।

ବିଶ୍ୱସ୍ତ ସୂତ୍ରରୁ ମହାରାଜା ଅବଗତ ହେଲେ ମଧୁସୂଦନ ଦାସ (ବାରିଷ୍ଟର)ଅର୍ଥ ସଙ୍କଟରେ କାଳାତିପାତ କରୁଛନ୍ତି । ସଙ୍ଗେ ସଙ୍ଗେ ରାଜଗୁରୁଙ୍କୁ ଡକାଇ କିପରି ସସମ୍ମାନେ ମଧୁବାବୁଙ୍କୁ ସାହାଯ୍ୟ କରାଯାଇପାରେ ସେ ବିଷୟରେ ବିଚାର ଆଲୋଚନା କଲେ । ପୁଣି ନିକଟବର୍ତ୍ତୀ ଡେଲଙ୍ଗ ଜମିଦାରୀ ପାରଳା ମହାରାଜାଙ୍କ ଅଧୀନରେ ଥିଲା । ଡେଲଙ୍ଗର ଆଇନ ପରାମର୍ଶଦାତା ଭାବରେ ମଧୁବାବୁଙ୍କୁ ଗ୍ରହଣ କରାଯିବା ସଙ୍ଗେ ସଙ୍ଗେ

ପତ୍ନୀ ବିୟୋଗର ବହୁଦିନ ପରେ ଗଜପତି ଟାଟା ଚକ୍ରଧରପୁର ପ୍ରଭୃତି ଅତିକ୍ରମ କରି ରେଳଯାତ୍ରା କରୁଥିବା ସମୟରେ ହଠାତ୍ ଦୁଇ ବୁନ୍ଦା ଲୁହ କାହାକୁ ନ ଜଣାଇଲା ପରି ପୋଛିଦେଲେ । କିନ୍ତୁ ସୁଚତୁର ସହଯାତ୍ରୀ ସତ୍ୟ ନାରାୟଣ ରାଜଗୁରୁ ବ୍ୟଥିତ ହୋଇ ପ୍ରଶ୍ନ କଲେ ଏ ଅହେତୁକ ଅଶ୍ରୁର କାରଣ । ଭାବବିହ୍ୱଳ କଣ୍ଠରେ ସେଇଠି ଗଜପତି କହିଲେ ଏହି ନିକଟବର୍ତ୍ତୀ ସୁଣ୍ଡିହା ରାଜକେମାଙ୍କର ମୋ ସହିତ ଦ୍ୱିତୀୟ ବିବାହର ପ୍ରସ୍ତାବ ମୁଁ ପାଇଥିଲି । କିନ୍ତୁ ବନ୍ଦିନୀ ଉତ୍କଳମାତାକୁ ଅବହେଳିତା କରି ସେ ପ୍ରସ୍ତାବ ଗ୍ରହଣ କରି ପାରିଲି ନାହିଁ । ପରେ ଶୁଣିଲି ସେ ନବ ଯୁବତୀ ଜଣେ ସାଧାରଣ ସାମନ୍ତ ବୃଦ୍ଧ ଶାସକଙ୍କର ଏକବିଂଶତମା ପତ୍ନୀ ଭାବରେ ପ୍ରବଳ ଅନିଚ୍ଛା ସତ୍ତ୍ୱେ ଯିବାକୁ ବାଧ୍ୟ ହେଲେ । ଆଜି ସେ କଥା ମନେ ପଡ଼ି ସ୍ୱାଭାବିକ ବ୍ୟଥା ଏ ଅଶ୍ରୁର କାରଣ ହେଲା ।

ଅଗ୍ରୀମ ଦଶହଜାର ଟଙ୍କା ତାଙ୍କ ନିକଟକୁ ପଠାଇଦେଲେ । ଏ ଦିଗଟି ବ୍ୟତୀତ ତାଙ୍କର ଅନ୍ୟଦିଗଟି ମଧ୍ଯ ଅନୁଧ୍ୟାନ ଯୋଗ୍ୟ । ଥରେ ମହାରାଜ ଜାଣିବାକୁ ପାଇଲେ ଗାଈ ଗୋରୁଙ୍କ ପାଇଁ ଦିଆଯାଉଥିବା କୁଣ୍ଡା ଇତ୍ୟାଦି ଜଣେ ଗୋସେବକ ବିକ୍ରୟ କରି ଅର୍ଥ ଆତ୍ମସାତ୍ କରିଛି । ଗଜପତି ସଙ୍ଗେ ସଙ୍ଗେ ଡକାଇ ଗୋଟିଏ ଗୋରୁକୁ ପାଖରେ ଠିଆ କରାଇ ସେ ସେବକକୁ କଠୋର ଦଣ୍ଡ ଦେଲେ । ଦଣ୍ଡ ଦେଲାବେଳେ କହିଥିଲେ, ଭାଷାହୀନା ଗୋମାତାର ଖାଦ୍ୟ ଅପହରଣ କରି ସେ ଯେଉଁ ଅପରାଧ କରିଛି, ହୁଏତ ତାଙ୍କର ପ୍ରକାଶ ଶକ୍ତି ଥିଲେ ତୋତେ କ୍ଷମାକରିଥାନ୍ତେ । ମୁଁ ସେ ଗୋମାତାର ସନ୍ତାନ, ତତେ କ୍ଷମାକରିବାର ଅଧିକାର ମୋର ନାହିଁ । କୃଷ୍ଣଚନ୍ଦ୍ରଙ୍କ ନିକଟରେ ଶ୍ରେଷ୍ଠ ବଡ଼ ସମସ୍ତେ ବିହିତ ବିଚାର ପାଉଥିଲେ ।

ବର୍ତ୍ତମାନ ଓଡ଼ିଶାର ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ପାଇଲଟ ହେବାର ବ୍ୟଗ୍ର ବାସନା ନେଇ ତତ୍କାଳୀନ ମୁଖ୍ୟମନ୍ତ୍ରୀ (ପ୍ରଧାନମନ୍ତ୍ରୀ) ସ୍ୱର୍ଗତଃ ବିଶ୍ୱନାଥ ଦାଶଙ୍କୁ ସାକ୍ଷାତକଲେ । ସେଠାରେ ବିଜୁବାବୁ ନିରାଶ ହେବା ସମ୍ବାଦ ମହାରାଜାଙ୍କୁ ମିଳିଲା । ବିଜୁବାବୁଙ୍କୁ ଡକାଇ ତାଙ୍କ ନିମିତ୍ତ ଆବଶ୍ୟକୀୟ ଅର୍ଥ ବ୍ୟବସ୍ଥା କରିବା ସଙ୍ଗେ ସଙ୍ଗେ ସମସ୍ତ ପ୍ରୟୋଜନୀୟ ସହଯୋଗର ପ୍ରତିଶ୍ରୁତି ଦେଲେ । ବିଜୁବାବୁଙ୍କ ପିତା ସ୍ୱର୍ଗତଃ ଲକ୍ଷ୍ମୀନାରାୟଣ ପଟ୍ଟନାୟକ ମହାରାଜାଙ୍କର ଦେୱାନ ଥିଲେ । ସ୍ୱତନ୍ତ୍ର ଉତ୍କଳ ଗଠନରେ ଦେୱାନ ଲକ୍ଷ୍ମୀନାରାୟଣଙ୍କ ଭୂମିକା ମଧ୍ୟ ଉଲ୍ଲେଖନୀୟ । ସେଦିନ ୧-୪-୧୯୩୬ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଉଲ୍ଲାସରେ ପାରଳାଖେମୁଣ୍ଡି ରାଜପଥରେ ବିଶାଳ ଜନଯାତ୍ରାର ନେତୃତ୍ୱ ନେଇଥିଲେ ଲକ୍ଷ୍ମୀନାରାୟଣ ବାବୁ । ଆନ୍ଧ୍ରପ୍ରଦେଶର ଜନୈକ ଇତିହାସ ଅଧ୍ୟାପକ ସ୍ୱର୍ଗତଃ ସୀତାପତି ଏହି ରୋମାଞ୍ଚକର ବିଶାଳ ଜନସମାବେଶକୁ ସହିପାରିଲେନି, କାରଣ ଇତିହାସର ଅଧ୍ୟାପକ ଭାବରେ ଦକ୍ଷିଣାଞ୍ଚଳ ସରକାର ତାଙ୍କୁ ସ୍ୱତନ୍ତ୍ର ଓଡ଼ିଶା ବିରୁଦ୍ଧରେ ଐତିହାସିକ ପ୍ରମାଣ ଦେବା ନିମିତ୍ତ ପାରଳାଖେମୁଣ୍ଡିରେ ଅଧିଷ୍ଠାପିତ କରିଥିଲେ । ସୀତାପତି କ୍ରୋଧାନ୍ୱିତ ହୋଇ ଆକାରରେ ତୁଳନାତ୍ମକ ଭାବରେ କ୍ଷୁଦ୍ର ହେଲେହେଁ ଡେଇଁ ଡେଇଁ ଲକ୍ଷ୍ମୀନାରାୟଣଙ୍କ ଗାଲରେ ଖୁବ୍ ଜୋରରେ ଗୋଟିଏ ଚାପୁଡ଼ା ମାରିଲେ । ଲକ୍ଷ୍ମୀନାରାୟଣ ହଠାତ୍ ସୀତାପତିଙ୍କୁ ଏପରି ପଦାଘାତ କଲେ ଯେ ସେ କିଛି ଦୂରରେ ରକ୍ତାକ୍ତ ହୋଇ ଛିଟକି ପଡ଼ିଲେ ଏବଂ ସ୍ୱକ୍ଷେତ୍ରକୁ ତତ୍କ୍ଷଣାତ୍ ପ୍ରତ୍ୟାବର୍ତ୍ତନ କଲେ । ତେଣୁ ଆଜିର ମୁଖ୍ୟମନ୍ତ୍ରୀ ବିଜୁବାବୁଙ୍କ ମଧ୍ୟରେ ଯେଉଁ କଳିଙ୍ଗ ଶୌର୍ଯ୍ୟର ପ୍ରକାଶ ଆମେ ଲକ୍ଷ୍ୟକରୁ ତା'ର ପଶ୍ଚାତ୍ ଦେଶରେ ପାରଳା ରାଜବଂଶର ପ୍ରେରଣା ନିହିତ । ଜଣେ ଦକ୍ଷ ପାଇଲଟ, ଜଣେ ସାହସୀ ଜନନାୟକ ଭାବରେ ବିଜୁବାବୁ ଆଜି ବିଶ୍ୱରେ ପରିଚିତ ଓ ପ୍ରତିଷ୍ଠିତ ହେବା ପୃଷ୍ଠଭୂମିର ଫଲ୍‌ଗୁର ତରଙ୍ଗପରି କୃଷ୍ଣଚନ୍ଦ୍ର ଗଜପତିଙ୍କ ଅବଦାନ ସର୍ବଦା ସ୍ୱୀକାର ଯୋଗ୍ୟ ।

ପାରଳା ରାଜବଂଶର ସତାନବେଲକ୍ଷ ଟଙ୍କା ବର୍ମାରେ ସୁରକ୍ଷିତ ଥିଲା । ରାଜସିଂହାସନ ଆରୋହଣ ପରେ ସମସ୍ତେ ଭାବିଥିଲେ ସେଥିରେ ଆଉ ତିନିଲକ୍ଷ ମିଶାଇ ପାରଳାଧିପତି କୋଟ୍ୟାଧିପତି ହେବେ ଓ ରାଜଭବନ ଶିଖରରେ କୋଟ୍ୟାଧିପତିର ସଙ୍କେତ ଭାବରେ ସ୍ୱର୍ଣ୍ଣକଳସ ସ୍ଥାପିତ କରିବେ । କିନ୍ତୁ ସେ ସମସ୍ତ ଅର୍ଥ ମହାରାଜା ଇଂଲଣ୍ଡ ଯାଇ ଗୋଲ ଟେବୁଲ ବୈଠକରେ ଓଡ଼ିଶାର ସମସ୍ୟା ଉପସ୍ଥାପିତ କରିବା ଉଦ୍ଦେଶ୍ୟରେ ଉପଯୋଗ କଲେ । ବର୍ମା ଛିଡ଼ିବା ଅବସରରେ ସେଠାରେ କର୍ମରତ ଉତ୍କଳୀୟମାନେ ମହାରାଜାଙ୍କୁ ଏକ ସ୍ୱର୍ଣ୍ଣମୁଦ୍ରା ପରିପୂର୍ଣ୍ଣ କଳସ ଉପହାର ଦେଲେ । ଉତ୍କଳପ୍ରାଣ ସେ ଉପହାରକୁ ମଧ୍ୟ ଉତ୍କଳପ୍ରଦେଶ ଗଠନ କାର୍ଯ୍ୟରେ ବିନିଯୋଗକଲେ । ତାଙ୍କ ଜୀବନର ବହୁ ଘଟଣା ପ୍ରତ୍ୟେକଟି ଓଡ଼ିଆଙ୍କ ପାଇଁ ପ୍ରେରଣାର ପରିପୂର୍ଣ୍ଣ ଆଧାର । ଆଜିର ଓଡ଼ିଶା ହାଇକୋର୍ଟ, ଉତ୍କଳ ବିଶ୍ୱବିଦ୍ୟାଳୟ, ବିଦ୍ୟାଧରପୁରର ବିଶାଳ ଧାନଗବେଷଣା କେନ୍ଦ୍ରର ସେହି ପ୍ରତିଷ୍ଠାପକ ପୁରୁଷ । ସାମାନ୍ୟ ଅବହେଳା ଘଟିଥିଲେ ଇଂରେଜ ସରକାର ଏହି ଗବେଷଣା କେନ୍ଦ୍ରକୁ ମଇମନ୍ ସିଂହରେ (ବର୍ତ୍ତମାନ ବାଙ୍ଗଲାଦେଶ) କରିବାକୁ ନିଷ୍ପତ୍ତି କରିଥିଲେ । ସ୍ୱର୍ଗତଃ ବିଶିଷ୍ଟ ବୈଜ୍ଞାନିକ ଡକ୍ଟର ପ୍ରାଣକୃଷ୍ଣ ପରିଜା, ଉପଦେଷ୍ଟା ଗୋଦାବରୀଶ ମିଶ୍ରଙ୍କ ସହଯୋଗ କ୍ରମେ ଓଡ଼ିଶାର ବହୁ ଉନ୍ନୟନ ଓ ବିକାଶ ମୂଳକ କାର୍ଯ୍ୟଧାରା ସେ ସଫଳତାର ସହିତ ସମ୍ପାଦନ କରିଥିଲେ । ସେ ଓଡ଼ିଶାର ରାଜଧାନୀ ପ୍ରତିଷ୍ଠା ନିମିତ୍ତ ଉପଯୁକ୍ତ ସ୍ଥାନ ନିର୍ଣ୍ଣୟ ପାଇଁ ଗୋଟିଏ କମିଟି ଗଢ଼ିଥିଲେ । ଉକ୍ତ କମିଟି ଓଡ଼ିଶାର ତିନୋଟି ସ୍ଥାନକୁ ଉପଯୁକ୍ତ ବୋଲି ପରାମର୍ଶ ଦେଲେ । ଯଥା ଚୌଦ୍ୱାର, ବ୍ରହ୍ମପୁର ନିକଟସ୍ଥ ରଙ୍ଗେଇଲୁଣ୍ଡା ତଥା ଭୁବନେଶ୍ୱର । ମହାରାଜା ରିପୋର୍ଟ ପଢ଼ିଲା ପରେ ହସି ହସି କହିଥିଲେ ଅର୍କ ବିଷ୍ଣୁ ଓ ଶିବଙ୍କର ପବିତ୍ର ଆଶୀର୍ବାଦର ଭୂମି ଭୁବନେଶ୍ୱର ହିଁ ଉତ୍କଳର ରାଜଧାନୀ ନିମିତ୍ତ ଉପଯୁକ୍ତ କ୍ଷେତ୍ର । ପ୍ରକୃତରେ ସମସ୍ତ ବିକାର ଓ ବିଳାସକୁ ଉର୍ଦ୍ଧ୍ୱରେ ରଖି ସେ ଏ ଅବହେଳିତ ଜାତିକୁ ଜାଗ୍ରତ କରିବା ନିମିତ୍ତ ସର୍ବଦା ସକ୍ରିୟ ଉଦ୍ୟମ କରିଯାଇଥିଲେ । ସମଗ୍ର ଓଡ଼ିଶା ପ୍ରତି ତାଙ୍କର ଯେଉଁ ଗଭୀର ସମ୍ବେଦନଶୀଳ ମମତା ତାହାର ଦୃଷ୍ଟାନ୍ତ ଅନୁଭବ ଯୋଗ୍ୟ । ପାରଳା ରାଜପଥରେ ମହାରାଜାଙ୍କ ସହିତ ରାଜଗୁରୁ ଥରେ କାର୍‌ରେ ଯାତ୍ରା କରୁଥିଲେ । ଗୋଟିଏ ଜାଗାରେ ରାସ୍ତା ଖରାପ ଥିବାରୁ କାର ଉପରକୁ ଉଠିଗଲା । ସେତେବେଳେ ମହାରାଜ ପ୍ରଶ୍ନକଲେ, ରାଜଗୁରୁ ମୁଣ୍ଡ ବାଜି କଷ୍ଟ ହେଲାକି ?

ବିଜୟପୁରୁ କହିଲେ-ମହାରାଜ, ଆପଣ ମୁଖ୍ୟ ଥାଉ ଥାଉ ଏ ଅଞ୍ଚଳର ଶାସକ ହୋଇ ଏ ଅଞ୍ଚଳର ରାସ୍ତା ଅବସ୍ଥା ଏପରି । ତାହାହିଁ କଷ୍ଟର କାରଣ । ସେଇଠି ସେ ଉତ୍ତରରେ କହିଥିଲେ, ମୁଁ ଓଡ଼ିଶାର ପ୍ରଧାନମନ୍ତ୍ରୀ ଚାରିଲାର ନୁହେଁ । ଏଠିତ କାର ଚାଲୁଛି । କଟକ ବାଲେଶ୍ୱର ପ୍ରଭୃତିରେ ଏପରି ବହୁ ଅଞ୍ଚଳ ଅଛି ଯେଉଁଠାକୁ ପାଦରେ ମଧ୍ୟ ଯାଇ ହେଉନାହିଁ । ତେଣୁ ମୁଁ ମୋର ରାଜ୍ୟରେ କାର ଚଢ଼ି ଯାଉଥିବାକୁ ନିଜେ ଲଜ୍ଜେଇ ଯାଉଛି । ଏପରି ମହାନୁଭବ ଜନନାୟକ ଏ ଜାତିର ଯଥାର୍ଥ ସେବକ । ଏ ଭୂମିର ସାର୍ଥକ ସନ୍ତାନ ତଥା ବରେଣ୍ୟ ଅଗ୍ରଗଣ୍ୟ ଉପଯୁକ୍ତ ଶାସକ । ସଂସ୍କୃତରେ କୁହାଯାଇଛି ସୁବର୍ଣ୍ଣ ପୁଷ୍ପାଂ ପୃଥିବ୍ୟାମ୍ ଚିନ୍ୱନ୍ତି ପୁରୁଷାବୟଃ ସୁରଶ୍ଚ କୃତବିଦ୍ୟଶ୍ଚ ଯଶ୍ଚ ଜାନାତି ସେବିତୁମ ଅର୍ଥାତ୍ ପୃଥିବୀରେ ଯଣେ ଲୋକ ସୁନାଫୁଲ ତୋଳିବାକୁ ବୀର, ବିଦ୍ୱାନ ଓ ସେବକ-ଏହି ତିନିପ୍ରକାରର ବ୍ୟକ୍ତି ସମର୍ଥ । ଏ ତିନିର ଅଦ୍ୱିତୀୟ ସମାହାର ପ୍ରାତଃ ସ୍ମରଣୀୟ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି । ତାଙ୍କର ଚିନ୍ତା, ଚେତନା, କଳ୍ପନା, ପ୍ରଚେଷ୍ଟା, ପ୍ରେରଣା ପ୍ରତ୍ୟେକଟି ପ୍ରତ୍ୟେକ ମୁହୂର୍ତ୍ତରେ ପ୍ରୀତିପୂର୍ଣ୍ଣ ପରିପୂର୍ଣ୍ଣ ପ୍ରାଣପାତ କରି ଏ ଜାତିର ସର୍ବାଙ୍ଗୀନ ଉନ୍ନତି ନିମିତ୍ତ ସମର୍ପଣ କରିଥିଲେ । ତାଙ୍କୁ ସାମାନ୍ୟ ସ୍ମରଣ କଲେ ମଧ୍ୟ ଆମେ ସମସ୍ତେ ଧନ୍ୟ ହୋଇଯିବା । ରାମଚନ୍ଦ୍ରଙ୍କ ସେତୁବନ୍ଧ ନିର୍ମାଣରେ ଯୋଗଦାନ କରିଥିବା ପ୍ରତ୍ୟେକଟି ବାନର ଯେପରି ଆମର ସ୍ମରଣୀୟ ଓ ବରଣୀୟ, ହୁଏତ ଅନେକ ଦିନପରେ ଆମେ ନବ ଉତ୍କଳ ଜନକ କୃଷ୍ଣଚନ୍ଦ୍ରଙ୍କର ପଦାଙ୍କ ଅନୁସରଣ କରି ସେପରି ମହନୀୟ ଓ ସ୍ମରଣୀୟ ହୋଇ ଉଠିବା । ମହତ ନିଧନେ ସେ ମହତ ସ୍ଥାନେ ପଡ଼ିଥିଲେ କ୍ଷୁଦ୍ରବାଲି କଣିକା ଯେପରି ଆଦରଣୀୟ ତିଳକ ଭାବରେ ଚର୍ଚ୍ଚିତ ହୋଇଯାଏ । ଠିକ୍ ସେହି ପରି କୃଷ୍ଣଚନ୍ଦ୍ରଙ୍କର ପ୍ରତ୍ୟେକଟି ସ୍ମୃତି ଆମ ଭାଲଦେଶରେ ପ୍ରଦୀପ୍ତ ଶିଖା ସଦୃଶ ସଦା ସଜାଗ ରହୁ ଏହାହିଁ ଆଜିର ପ୍ରାର୍ଥନା । ଜୟ ଗଜପତି ।

ବନ୍ଦେ ଉତ୍କଳ ଜନନୀ ।



# ରାଜଗାଙ୍ଗପୁର ପୌର ପରିଷଦ

ରାଜଗାଙ୍ଗପୁରର ଅଗଣିତ କରଦାତା

ଓ ସହରବାସୀଙ୍କୁ ହାର୍ଦ୍ଦିକ ଶୁଭେଚ୍ଛା

ଜଣାଉଛି । ତତ୍ ସଙ୍ଗେ ସଙ୍ଗେ ସହରର

ଶିକ୍ଷା, ସ୍ୱାସ୍ଥ୍ୟ, ପରିବେଶ ଓ ସୌନ୍ଦର୍ଯ୍ୟର

ରକ୍ଷାନିମନ୍ତେ ଆପଣମାନଙ୍କ ଆନ୍ତରିକ

ସାହାଯ୍ୟ ଓ ସହଯୋଗ କାମନା

କରୁଅଛି ।

**ଶ୍ରୀ ମୋହନଲାଲ କିଶାନ**
ଓ. ଏ. ଏସ୍.
କାର୍ଯ୍ୟନିର୍ବାହୀ ଅଧିକାରୀ

**ଶ୍ରୀ ନନ୍ଦ କିଶୋର ଅଗ୍ରୱାଲ**
ନଗରପାଳ
ରାଜଗାଙ୍ଗପୁର

# ପ୍ରଦେଶ ଗଠନରେ ମହାରାଜାଙ୍କ ଭୂମିକା

☐ ବସନ୍ତ କୁମାର ପାଣିଗ୍ରାହୀ

☐ ନବ ଉତ୍କଳର ନିର୍ମାତା ଭାବରେ ମହାରାଜା ଓଡ଼ିଆ ଜାତିର ଚିର ନମସ୍ୟ । ଏହା କଣ ଏବେମଧ୍ୟ ଓଡ଼ିଶାବାସୀଙ୍କୁ ମନେ ପକାଇଦେବାକୁ ପଡ଼ିବ ? ☐

ଯାହାଙ୍କର ଆଗମନ ସୂଚନା ଦେଇ ରାଜ ଦରବାର ମୁଖରିତ କରି ଭାଟ କହୁଥିଲା ଶ୍ରୀ ଶ୍ରୀ ଶ୍ରୀ ଗଜପତି ଶ୍ରୀ ଶ୍ରୀ ଶ୍ରୀ କ୍ଷେତ୍ରପତି ଶ୍ରୀ ଶ୍ରୀ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣଦେଓ ମେହେରବାନ ଦସ୍ତାନ ବଜେ । ସେହି ମହାରାଜାଙ୍କ ଜନ୍ମ ଥିଲା ୧୮୯୨ ମସିହା ବୈଶାଖ କୃଷ୍ଣ ଅମାବାସ୍ୟା ତିଥିରେ, ଓଡ଼ିଶାର ସୁନାମଧନ୍ୟ ପ୍ରସିଦ୍ଧ ଗଜପତି ବଂଶରେ । ୧୯୧୩ ମସିହାରେ ଏକୋଇଶି ବର୍ଷ ବୟସରେ ସେ ପାରଳା ଖେମୁଣ୍ଡି ରାଜ୍ୟର ଶାସନଭାର ଗ୍ରହଣ କରିଥିଲେ ।

ସେହି ସମୟରେ ବିଭିନ୍ନ ପଡ଼ୋଶୀ ରାଜ୍ୟମାନଙ୍କ ଶାସନାଧୀନରେ ଓଡ଼ିଆ ଭାଷାଭାଷୀ ମାନଙ୍କର ଭାଷା, ସଂସ୍କୃତି, ସଂହତି ନଷ୍ଟ ହୋଇ ଆସୁଥିଲା । ଉତ୍କଳ ସମ୍ମିଳନୀ ଆନୁକୂଲ୍ୟରେ ସମଗ୍ର ଓଡ଼ିଆ ଜାତିକୁ ଏକତ୍ର କରି ଏକ ଶାସନାଧୀନ କରିବା ଉଦ୍ୟମ ଆରମ୍ଭ କରାଯାଇଥିଲା । ସମ୍ମିଳନୀର ଦଶମ ଅଧିବେଶନ ୧୯୧୪ ମସିହାରେ ପାରଳା ଖେମୁଣ୍ଡି ଠାରେ ବସିଥିଲା । ଜାତି ଭାଇଙ୍କ ଦୁର୍ଦ୍ଦଶାରେ ଅସ୍ଥିର ହୋଇ ଯୁବକ ରାଜା ସାହେବ ସମ୍ମିଳନୀ ଆୟୋଜନର ସମସ୍ତ ଦାୟିତ୍ୱ ନିଜେ ଗ୍ରହଣ କରିଥିଲେ ।

କୁଳବୃଦ୍ଧ ମଧୁସୂଦନ, ଉତ୍କଳମଣି ଗୋପବନ୍ଧୁଙ୍କ ସମେତ ଓଡ଼ିଆ ଜାତିର ସମସ୍ତ ନେତୃବୃନ୍ଦ ଉତ୍କଳ ଓ କଳିଙ୍ଗର ରାଜନ୍ୟମଣ୍ଡଳୀ ତଥା ବିଭିନ୍ନ ଅଞ୍ଚଳରୁ ପ୍ରାୟ ଦୁଇହଜାର ଓଡ଼ିଆ ଭାଇ ଅଧିବେଶନରେ ଯୋଗ ଦେଇ ଥିଲେ । ମହାରାଜା ଉକ୍ତ ଅଧିବେଶନର ସଫଳତା ଲାଗି ଦଶହଜାର ଟଙ୍କା ସେତେବେଳେ ବ୍ୟୟ କରିଥିଲେ । ସେହିଦିନଠାରୁ ଉତ୍କଳ ପ୍ରଦେଶ ଗଠନ ହେବା ପର୍ଯ୍ୟନ୍ତ ମହାରାଜା ଉତ୍କଳ ସମ୍ମିଳନୀକୁ ପ୍ରତ୍ୟକ୍ଷ କାର୍ଯ୍ୟକାରୀ ନେତୃତ୍ୱ ଦେଇ ଆସିଛନ୍ତି ।

୧୯୨୪ ମସିହାରେ ଭାରତ ସରକାର ବିଭିନ୍ନ ରାଜ୍ୟରେ ଥିବା ଓଡ଼ିଆ ଅଞ୍ଚଳଗୁଡ଼ିକର ଦେଶ ମିଶ୍ରଣ ସଂକ୍ରାନ୍ତରେ ଜନମତ ଜାଣିବାପାଇଁ ଓଡ଼ିଶାର ପଲିଟିକାଲ୍ ଏଜେଣ୍ଟ ମି: ଫିଲିପ୍ ଏବଂ ବିଶାଖାପାଟଣାର ଜିଲ୍ଲାପାଳ ମି. ଡଫ୍ ଙ୍କୁ ନେଇ ଏକ କମିଟି ଗଠନ କଲେ । ଏହି କମିଟିକୁ ଫିଲିପ୍ ଡଫ୍ କମିଟି କୁହାଗଲା । ଏହି କମିଟି ମାନ୍ଦ୍ରାଜରେ ଥିବା ଓଡ଼ିଆ ଅଞ୍ଚଳ ଗୁଡ଼ିକୁ "ବିହାର ଓ ଓଡ଼ିଶା" ଶାସନକୁ ହସ୍ତାନ୍ତର କରିବା ଦାବୀର ଯୁକ୍ତି ଯୁକ୍ତତା ବିଷୟରେ ଅନୁସଂଧାନ କରୁଥିଲେ । ମହାରାଜାଙ୍କ ନେତୃତ୍ୱରେ ଏକ ପ୍ରତିନିଧି ଦଳଦ୍ୱାରା ହସ୍ତାନ୍ତର ସପକ୍ଷରେ ସମସ୍ତ ତଥ୍ୟ ଯୋଗାଇ ଦିଆଯାଇଥିଲା । ଯାହା ୧୯୩୩ ମସିହାରେ କଟକ ଠାରେ

ଙ୍କ ଉପାଧି କୁଳୀନ ସଭରେ ଫିଲିପ୍ ସାହେବ ସୂଚନା ଦେଇ ଥିଲେ । ସେ କହିଥିଲେ ମାନ୍ଦ୍ରାଜରୁ ଓଡ଼ିଆ ଅଞ୍ଚଳଗୁଡ଼ିକର ଶାସନ ପୃଥକ୍ କରିବା ସୁପାରିଶ ମହାରାଜାଙ୍କ ମତ ଏବଂ ଇଚ୍ଛାରେ ପ୍ରଭାବିତ ହୋଇ କେବଳ ଆମେ କରିଥିଲୁ ।

୧୯୨୮ ମସିହା ବ୍ରିଟିଶ ସରକାର ଦ୍ୱାରା ନିଯୁକ୍ତ ସାଇମନ୍ କମିଶନ ଭାରତ ଆସିଥାଆନ୍ତି । ଭାରତ ପୁନଃଗଠନ ବିଷୟ ଅନୁଧ୍ୟାନ କରିବା ଲାଗି ଜାତୀୟ କଂଗ୍ରେସ ସାଇମନ୍ କମିଶନକୁ ଅସହଯୋଗ କରିବା ଲାଗି ପ୍ରସ୍ତାବ ଗ୍ରହଣ କରିଥିଲା । ତେଣୁ ସାରା ଭାରତରେ କମିଶନ୍ ବିରୋଧରେ ବିକ୍ଷୋଭ ପ୍ରତିବାଦ, କଳାପତାକାର ପ୍ରଦର୍ଶନ ଓ କମିଶନ ଫେରିଯାଅ ଧ୍ୱନିଦେଉଥିଲା । କମିଶନ ଯେତେବେଳେ ପାଟନା ପହଞ୍ଚିଲେ ଏହି ଭଳି ପ୍ରବଳ ବିକ୍ଷୋଭ ମଧ୍ୟରେ କମିଶନଙ୍କୁ ଉତ୍କଳ ସମ୍ମିଳନୀ ପକ୍ଷରୁ ସ୍ୱାଗତ କରିବା ଲେଖା ପ୍ରାଚୀରପତ୍ର ମାନଙ୍କରେ ଦେଖି ସମ୍ମିଳନୀର ଦାବୀଗୁଡ଼ିକ ପ୍ରତି କମିଶନ ଆକୃଷ୍ଟ ହୋଇଥିଲେ । ସେତେବେଳେ ମହାରାଜା ସମସ୍ତ ପାରିପାର୍ଶ୍ୱିକ ପରିସ୍ଥିତିକୁ ଅନୁଧ୍ୟାନ କରି ଠିକ୍ କରିଥିଲେ ଯେ, ଯଦି ବର୍ତ୍ତମାନ ଓଡ଼ିଆମାନଙ୍କ ଦାବୀ ସ୍ୱୀକୃତ ନ ହୁଏ ତେବେ ଆଉ କେବେ ହୋଇପାରିବ ନାହିଁ । ତେଣୁ ଓଡ଼ିଆ ମାନଙ୍କ ତରଫରୁ ବିଭିନ୍ନ ସ୍ଥାନରେ ସାଇମନ୍ କମିଶନଙ୍କୁ ସ୍ୱାଗତ କରି ଦାବୀପତ୍ରମାନ ଦିଆଯାଇଥିଲା । ଏଥିପାଇଁ ୮ ମସିହା କଲିକତା ଜାତୀୟ କଂଗ୍ରେସ ଅଧିବେଶନରେ ଓଡ଼ିଶାର ପ୍ରତିନିଧିମାନଙ୍କୁ ବହୁ ଅଭଦ୍ରୋକ୍ତି ଶୁଣିବାକୁ ପଡ଼ିଥିଲା ଓଡ଼ିଆମାନେ ଏହାର ପ୍ରତିବାଦକରି ପଣ୍ଡିତ ନୀଳକଣ୍ଠଙ୍କ ନେତୃତ୍ୱରେ ଅଧିବେଶନ ବର୍ଜନ କରିବାରୁ ଯେଉଁ ଗୁରୁତର ପରିସ୍ଥିତି ସୃଷ୍ଟି ହେଲ ପଣ୍ଡିତ ନେହରୁଙ୍କ ମଧ୍ୟସ୍ଥତାରେ ତାଙ୍କ-ପିତା ଅଧିବେଶନର ସଭାପତି ମୋତିଲାଲ୍ଙ୍କୁ ଓଡ଼ିଆମାନଙ୍କ ପାଖରେ କ୍ଷମା ମାଗିବାକୁ ପଡ଼ିଥିଲା । ପରେ ସାଇମନ କମିଶନ୍ ତାଙ୍କ ରିପୋର୍ଟରେ ମହାରାଜାଙ୍କ ନେତୃତ୍ୱ ପ୍ରତି ଆକୃଷ୍ଟହୋଇ ଓଡ଼ିଆ-ମାନଙ୍କ ଦାବୀ ପ୍ରତି ସହାନୁଭୂତି ପ୍ରକାଶ କରିଥିଲେ । ଯାହାକି ପରବର୍ତ୍ତୀ ଦିନଗୁଡ଼ିକରେ ଓଡ଼ିଶା ଦାବୀର ସଫଳ ପୃଷ୍ଠଭୂମି ରୂପେ କାର୍ଯ୍ୟ କରି ଆସିଥିଲା

୧୯୩୦ ରେ ପ୍ରଥମ ଗୋଲ୍ଟେବୁଲ୍ ବୈଠକ ବିଲାତରେ ବସିଲା, "ବିହାର ଓଡ଼ିଶା" ସରକାର ମହାରାଜାଙ୍କୁ ଓଡ଼ିଆଙ୍କ ପ୍ରତିନିଧି ଭାବରେ ସୁପାରିଶ କଲେ । ମହାରାଜା ବିଲାତଯାଇ ଦେଖିଲେ ବୈଠକର କାର୍ଯ୍ୟନିର୍ଘଣ୍ଟରେ ଓଡ଼ିଶା ପ୍ରସଙ୍ଗ ସ୍ଥାନ ପାଇନାହିଁ । କେବଳ ସିନ୍ଧୁ ଏକ ସ୍ୱତନ୍ତ୍ର ପ୍ରଦେଶ ଆଲୋଚନା ଲାଗି ସ୍ଥାନ ପାଇଛି । ବୈଠକରେ ନିର୍ଦ୍ଧାରିତ ସମସ୍ତ ବିଷୟ ଗୁଡ଼ିକ ଆଲୋଚନା ହେବା ପରେ ମହାରାଜା ଓଡ଼ିଶା ବିଷୟରେ କିଛି କହିବା ଲାଗି ସଭାପତିଙ୍କ ଅନୁମତି ନେଇ ଏହିଭଳି ଏକ ତଥ୍ୟ ସମ୍ବଳିତ ମର୍ମସ୍ପର୍ଶୀ ଭାଷଣ ଦେଲେ ଯେଥିରେ ବୈଠକରେ ଉପସ୍ଥିତଥିବା ସମସ୍ତ ସଭ୍ୟ ପ୍ରଭାବିତ ହୋଇ ଯାଇଥିଲେ ।

ବ୍ରହ୍ମପୁରର ସାର୍ ପରଶୁରାମ ପାତ୍ର, ଶ୍ରୀ ପ୍ରଭାସ ଚନ୍ଦ୍ର ମିତ୍ର ମହାରାଜାଙ୍କୁ ସମର୍ଥନକରି ଭାଷଣ ଦେଇଥିଲେ । ସଭାରେ ମହାରାଜାଙ୍କ ଉକ୍ତିପ୍ରତି ଗଭୀର ସହାନୁଭୂତି ପ୍ରକାଶ ପାଇଥିଲା, ଯାହା ଭବିଷ୍ୟତର ସଫଳତା ପାଇଁ ମୂଳଭିତ୍ତି ସ୍ଥାପନ କରିଥିଲା । ମହାରାଜା ପୁନର୍ବାର ତୃତୀୟ ଗୋଲ ଟେବୁଲ୍ ବୈଠକରେ ଯୋଗଦେଇ ବ୍ରିଟିଶ୍ ଜାତି ଏବଂ ବୈଠକର ସଭ୍ୟ ମାନଙ୍କ ମନରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଯୁକ୍ତିଯୁକ୍ତତାକୁ ଦୃଢ଼ୀଭୂତ କରାଇ ପାରିବାରେ ଯଶସ୍ୱୀ ହୋଇପାରିଥିଲେ ।

ସ୍ୱତନ୍ତ୍ର ପ୍ରଦେଶ ଗଠନ ଲାଗି ପ୍ରସ୍ତାବିତ ପ୍ରଦେଶର ଜନସଂଖ୍ୟା ଏବ ଆର୍ଥିକ ସ୍ୱଚ୍ଛଳତା ମାପକାଠି ରୂପେ ଧରାଯାଉଥିଲା । ୧୯୩୦ ସାଇମନ୍ କମିଶନ୍ ରିପୋର୍ଟ ଅନୁସାରେ ଆନ୍ଧ୍ର, ଓଡ଼ିଶା ଓ ସିନ୍ଧୁ ପ୍ରସ୍ତାବିତ ପ୍ରଦେଶ ଗୁଡ଼ିକର ଜନସଂଖ୍ୟା ଏବଂ ଅର୍ଥନୈତିକ ବ୍ୟବସ୍ଥା ହେଲା ।

| ପ୍ରସ୍ତାବିତ ପ୍ରଦେଶ | ଜନସଂଖ୍ୟା | ଆଦାୟ |
|---|---|---|
| ଆନ୍ଧ୍ର | ୧୭୦ ଲକ୍ଷ | ୩୫୦ ଲକ୍ଷ |
| ଓଡ଼ିଶା | ୧୦୦ ଲକ୍ଷ | ୮୦ ଲକ୍ଷ |
| ସିନ୍ଧୁ | ୪୦ ଲକ୍ଷ | ୭୪ ଲକ୍ଷ |

ପ୍ରସ୍ତାବିତ ଆନ୍ଧ୍ରପ୍ରଦେଶର ଯୁକ୍ତି ବଳିଷ୍ଠ ଥିଲେ ମଧ୍ୟ ତାହା ଗ୍ରହଣ କରାନଯାଇ ଜିନ୍ନାଙ୍କ ଯୋଗୁ ସିନ୍ଧୁ ପ୍ରଦେଶ ଏବଂ ମହାରାଜାଙ୍କ ବଳିଷ୍ଠ ନେତୃତ୍ୱ ଯୋଗୁ ଓଡ଼ିଶାପ୍ରଦେଶ ଗଠନ କରିବା ନିଷ୍ପତ୍ତି ନିଆଯାଇଥିଲା । ଓଡ଼ିଶା ଗଠିତ ହେବା କୋଡ଼ିଏ ବର୍ଷପରେ ବହୁ ଆନ୍ଦୋଳନ, ବିକ୍ଷୋଭ ଓ ପ୍ରାଣବଳି ଦେବା ପରେ ଆନ୍ଧ୍ରପ୍ରଦେଶ ସ୍ୱାଧୀନ ଭାରତରେ ଗଠିତ ହେଲା କିନ୍ତୁ ମହାରାଜାଙ୍କ ତ୍ୟାଗ, ନିଷ୍ଠା, ବଳିଷ୍ଠଯୁକ୍ତି ଓ ବ୍ରିଟିଶ୍କୁ ବିଭିନ୍ନ ଉପାୟରେ ପ୍ରଭାବିତ କରିବା ଚେଷ୍ଟା ଫଳରେ ୧୯୩୩ରେ ଓଡ଼ିଶା ପ୍ରଦେଶ ଗଠନ ଘୋଷଣା ସମ୍ଭବ ହୋଇ ପାରିଥିଲା । ଓଡ଼ିଆ ଜାତିର ବହୁ ନେତୃବର୍ଗ ମହାରାଜାଙ୍କୁ ସହଯୋଗ ଦେଇଛନ୍ତି ସତ, କିନ୍ତୁ ଧନ,ମନ, ସମୟ ସର୍ବସ୍ୱ ଉତ୍ସର୍ଗ କରି ଓଡ଼ିଆ ଜାତିକୁ ସଂଗଠିତ କରି ସ୍ୱତନ୍ତ୍ର ପ୍ରଦେଶରେ ସମସ୍ତ ଓଡ଼ିଆଙ୍କୁ ଏକ ଶାସନାଧୀନ କରାଇବା ସଫଳ ଉଦ୍ୟମ ଲାଗି ଉତ୍କଳ ନିର୍ମାତା ଭାବରେ ମହାରାଜା ଓଡ଼ିଆ ଜାତିର ଚିର ନମସ୍ୟ ହୋଇ ରହିଗଲେ ।

# କୃଷ୍ଣଚନ୍ଦ୍ର ଗଜପତିଙ୍କ ପୁରୀ ଶ୍ରୀମନ୍ଦିର ଦର୍ଶନ

☐ ବିଷ୍ଣୁ ଚରଣ ମହାନ୍ତି

☐ ପୁରୁଷୋତ୍ତମ ଦେବଙ୍କ ଅମଳରୁ ପାରଳାଖେମୁଣ୍ଡିର ରାଜାମାନେ ପୁରୀର ଗଜପତି ମହାରାଜାଙ୍କୁ ସୂର୍ଯ୍ୟ ବଂଶୀୟ ବୋଲି ଗ୍ରହଣ କରୁ-ନଥିଲେ । ପୁରୁଷୋତ୍ତମ ଦେବଙ୍କ ରାଜତ୍ୱ ଫଳରେ ନିଜର ମର୍ଯ୍ୟାଦା ଓ ରାଜ୍ୟ ଶାସନ ସୁଯୋଗ ହରାଇ ଅଛନ୍ତି ବୋଲି ସେମାନଙ୍କ ଅଭିଯୋଗ ଥିଲା । ☐

୧୯୩୭ ସାଲର ନିର୍ବାଚନରେ ଓଡ଼ିଶାରେ କଂଗ୍ରେସ ସଂଖ୍ୟା ଗରିଷ୍ଠତା ଲାଭ କରିଥିଲା । ଓଡ଼ିଶାର ଗଭର୍ଣ୍ଣର ଓଡ଼ିଶା କଂଗ୍ରେସ ଦଳର ନେତା ବିଶ୍ୱନାଥ ଦାସଙ୍କୁ ମନ୍ତ୍ରୀ ମଣ୍ଡଳ ଗଠନ ନିମିତ୍ତ ଅନୁରୋଧ କରିଥିଲେ । ୧୯୩୫ ଭାରତ ଶାସନ ଆଇନରେ ରାଜ୍ୟପାଳଙ୍କର ଅନେକ ବିଶେଷ ଦାୟିତ୍ୱ ଓ ମନ୍ତ୍ରୀମାନଙ୍କର ପରାମର୍ଶ ବିନା ନିଷ୍ପତ୍ତି ନେବାର ଅଧିକାର ଥିବାରୁ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠନ ଦାୟିତ୍ୱ ନେଇ ନଥିଲା । ସଂଖ୍ୟା ଗରିଷ୍ଠତା ନଥିଲେ ମଧ୍ୟ ପରବର୍ତ୍ତୀ ରାଜନୈତିକ ଦଳର ନେତାଭାବେ ମହାରାଜା କୃଷ୍ଣଚନ୍ଦ୍ର ଗଭର୍ଣ୍ଣର ହବାକଙ୍କର ନିମନ୍ତ୍ରଣ କ୍ରମେ ମନ୍ତ୍ରୀମଣ୍ଡଳ ଗଠନ ନିମିତ୍ତ ସମ୍ମତି ଦେଲେ । ତା ୧।୪।୩୭ରେ ଗଭର୍ଣ୍ଣର ମନ୍ତ୍ରୀମଣ୍ଡଳକୁ ଶପଥ ପାଠ କରାଇଲେ । ଅବଶ୍ୟ ଏହା ଏକ କାମଚଳା ମନ୍ତ୍ରୀମଣ୍ଡଳ ଥିଲା । ମାତ୍ର ଗଜପତିଙ୍କ ମତ ଥିଲା ଯେ, ନୂତନ ପ୍ରଦେଶ ଗଠିତ ହୋଇ ପ୍ରଦେଶରେ ଲୋକପ୍ରତିନିଧି ମୂଳକ ଉତ୍ତର ଦାୟୀ ଶାସନ ଗଢ଼ା ନଗଲେ ପ୍ରଦେଶ ଗଠନ ଅପୂର୍ଣ୍ଣ ରହିଗଲା ବୋଲି ବୁଝିବାକୁ ହେବ । ଏହି ନୂତନ ମନ୍ତ୍ରୀମଣ୍ଡଳରେ ମହାରାଜା ପ୍ରଧାନ ମନ୍ତ୍ରୀ (ସେତେବେଳର ନାମ କାରଣ), ମାନ୍ଧାତା ଗୋରାଚାନ୍ଦ ପଟ୍ଟନାୟକ ଓ ପୁରୀର ଓକିଲ ଲତିଫୁର ରହମନ ଦୁଇ ସହଯୋଗୀ ମନ୍ତ୍ରୀ ଥିଲେ ।

ଅପ୍ରେଲ ମାସରେ ମହାରାଜାଙ୍କର ପ୍ରଧାନମନ୍ତ୍ରୀ ଭାବରେ ପୁରୀ ଶ୍ରୀ ମନ୍ଦିରରେ ଜଗନ୍ନାଥ ଦର୍ଶନ ଏକ ଉଲ୍ଲେଖନୀୟ ଘଟଣା ଥିଲା । ପୁରୁଷୋତ୍ତମ ଦେବଙ୍କ ଅମଳରୁ ପାରଳା ଖେମୁଣ୍ଡିର ରାଜାମାନେ ପୁରୀର ଗଜପତି ମହାରାଜାଙ୍କୁ ସୂର୍ଯ୍ୟବଂଶୀୟ ବୋଲି ଗ୍ରହଣ କରୁ ନ ଥିଲେ । ତେଣୁ ସେମାନେ ଶ୍ରୀମନ୍ଦିରକୁ ଦର୍ଶନ ନିମିତ୍ତ ଯାଉ ନଥିଲେ । ପୁରୁଷୋତ୍ତମ ଦେବଙ୍କର ରାଜତ୍ୱ ଫଳରେ ନିଜର ମର୍ଯ୍ୟାଦା ଓ ରାଜ୍ୟଶାସନ ସୁଯୋଗ ହରାଇ ଅଛନ୍ତି ବୋଲି ସେମାନଙ୍କର ଅଭିଯୋଗ ଥିଲା । ମହାରାଜା ଇଷ୍ଟଦେବୀ ମାଣିକେଶ୍ୱରୀଙ୍କ ବ୍ୟତୀତ ଶ୍ରୀଚୈତନ୍ୟ ପନ୍ଥୀ ବୈଷ୍ଣବ ଭାବରେ ଶ୍ରୀ ଜଗନ୍ନାଥଙ୍କର ପରମ ଭକ୍ତ ଥିଲେ । ପାରଳାଖେମୁଣ୍ଡିର ଜଗନ୍ନାଥ ବିଗ୍ରହ ଆକାର, ବିଭବ ଓ ପ୍ରତିଷ୍ଠାରେ ପୁରୀ ଶ୍ରୀମନ୍ଦିରର ଅଧିଷ୍ଠାତ୍ରୀ ଜଗନ୍ନାଥଙ୍କୁ ଦର୍ଶନ କରି ପ୍ରଦେଶ ଗଠନ ନିମିତ୍ତ ତାଙ୍କର ଆଶୀର୍ବାଦ ପାଇ କୃତଜ୍ଞତା ଜଣାଇବାକୁ ବାହାରିଲେ । ଓଡ଼ିଶାର ଉଜ୍ଜ୍ୱଳ ଭବିଷ୍ୟତ ନିମିତ୍ତ ପ୍ରାର୍ଥନା ମଧ୍ୟ ତାଙ୍କର ଉଦ୍ଦେଶ୍ୟ ଥିଲା । ପୁରୀ ଗଜପତି ମହାରାଜା ଶ୍ରୀ ରାମଚନ୍ଦ୍ର ଦେବ ମୁକ୍ତିମଣ୍ଡପ ପଣ୍ଡିତ ମଣ୍ଡଳୀର ପରାମର୍ଶକ୍ରମେ ଗଙ୍ଗବଂଶୀ ମହାରାଜାଙ୍କୁ ଶ୍ରୀକ୍ଷେତ୍ର ଦର୍ଶନ ନିମିତ୍ତ ଅନୁରୋଧ କଲେ । ବ୍ୟବସ୍ଥାପକ ପ୍ରଧାନ ମନ୍ତ୍ରୀ ଏହା ଗ୍ରହଣ କଲେ ।

ଦୁଇ ରାଜପରିବାର ମଧ୍ୟରେ ଯୁଗ ଯୁଗର ବିତୃଷ୍ଣା ଲୋକପ୍ରତିନିଧି ମହାରାଜାଙ୍କର ଦର୍ଶନ-ପ୍ରାର୍ଥନା ଫଳରେ ଦୂରୀଭୂତ ହେଲା । ମହାରାଜା ପୁରୀ ଯାତ୍ରା କଲେ । ପୁରୀ ଠାକୁର ରାଜା ପରମ୍ପରା ଅନୁସାରେ ବିଶେଷ ଉତ୍ସବ ଓ ପୋଷାକରେ ସହର ଉପକଣ୍ଠରେ ତାଙ୍କୁ ସମ୍ବର୍ଦ୍ଧନା କରି ଶ୍ରୀ ମନ୍ଦିରରେ ଜଗନ୍ନାଥ ଦର୍ଶନ ନିମିତ୍ତ ଅନୁରୋଧ କଲେ । ଅନୁରୋଧ ଗ୍ରହଣ କରି ମହାରାଜା ଶ୍ରୀ ମନ୍ଦିରରେ ଛତା, ପାଲିଙ୍କି ଚାମର, ଆଲଟ, କାହାଳି ଆଦି ରାଜକୀୟ ଉପଚାରର ସହିତ ପ୍ରବେଶ କଲେ । ପରମ୍ପରାକୁ ସମ୍ମାନ ଦେଖାଇ ମହାରାଜା ଗଙ୍ଗ ବଂଶୀୟ ପରମ୍ପରା ନେମେ ମନ୍ଦିରରେ ରତ୍ନ ସିଂହାସନରେ ସୁବର୍ଣ୍ଣ ମୁଦ୍ରା ବାଣ୍ଟିଲେ । ପଣ୍ଡିତ, ପୂଜକ ଓ ଅନ୍ୟମାନଙ୍କୁ ଯଥୋଚିତ ଦକ୍ଷିଣା ମଧ୍ୟ ଦାନ କଲେ । ରାଜା ଶ୍ରୀ ରାମଚନ୍ଦ୍ର ଦେବ ମଧ୍ୟ ତାଙ୍କର ଶୁଭାଗମନ ଉପଲକ୍ଷେ ଯଥୋଚିତ ବ୍ୟବସ୍ଥା କରିଥିଲେ । ଫଳରେ ପାଞ୍ଚଶହ ବର୍ଷ ଧରି ଦୁଇ ଗଜପତି ବଂଶ ମଧ୍ୟରେ ଥିବା ତିକ୍ତତା ଦୂର ହୋଇ ଯାଇ ପାରିଲା ।

( ଲେଖକଙ୍କ ପ୍ରକାଶୋନ୍ମୁଖୀ ପୁସ୍ତକ 'କୀର୍ତ୍ତି କିରିଟ ପାରଳା ମହାରାଜା' ପୁସ୍ତକର 'ପ୍ରଦେଶ ଗଠନ ଓ ମନ୍ତ୍ରୀତ୍ୱ' ଅଧ୍ୟାୟର ଏକ କ୍ଷୁଦ୍ରାଂଶ ବିଶେଷ )

# ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଏବଂ ସୁଲେଖକ ଦୟାନିଧି

ଡକ୍ଟର ଅମୂଲ୍ୟ କୃଷ୍ଣ ମିଶ୍ର

ପହିଲା ଅପ୍ରେଲ ୧୯୩୬ରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଉତ୍ସବରେ ବରଗଡ଼ରେ ଦୟାନିଧି କେବଳ ଏକ ହୃଦୟସ୍ପର୍ଶୀ ଭାଷଣ ଦେଇ ନଥିଲେ, ଗୋପବନ୍ଧୁଙ୍କ ମୃତ୍ୟୁପରେ ପାରଳା ମହାରାଜାଙ୍କୁ ଓଡ଼ିଶାର ମୁକୁଟ ବିହୀନ ସମ୍ରାଟ ବୋଲି ଆଖ୍ୟା ଦେଇ ତତ୍କାଳୀନ ଅନେକ ନେତୃସ୍ଥାନୀୟ କଂଗ୍ରେସ ବ୍ୟକ୍ତିଙ୍କର ସମାଲୋଚନାର ପାତ୍ର ହୋଇଥିଲେ ।

ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ସହିତ ଦୟାନିଧିଙ୍କ ପ୍ରଥମ ସାକ୍ଷାତ ହୋଇଥିଲା ପାରଳାଖେମୁଣ୍ଡିରେ ଉତ୍କଳ ସମ୍ମିଳନୀର ଦଶମ ଅଧିବେଶନ ସମୟରେ । ୧୯୧୪ ନଭେମ୍ବରରୁ ଆୟୋଜନ ଲାଗିଲା ପାରଳାଖେମୁଣ୍ଡିରେ ଉତ୍କଳ ସମ୍ମିଳନୀର ଦଶମ ଅଧିବେଶନ ପାଇଁ । ଯେହେତୁ ବଡ଼ଦିନ ଛୁଟିରେ ଅଧିବେଶନ ଅନୁଷ୍ଠିତ ହେଉଥିଲା, ଅନେକ ଛାତ୍ର ଏହି ସ୍ୱେଚ୍ଛାସେବକ ଦଳରେ ଅନ୍ତର୍ଭୁକ୍ତ ହେଲେ । ଛାତ୍ର ପ୍ରତିନିଧିମାନଙ୍କ ନେତୃତ୍ୱ ନେଲେ ଦୟାନିଧି ।

ଦୟାନିଧିଙ୍କ ନେତୃତ୍ୱରେ ଏକ ବିରାଟ ଯୁବ ପ୍ରତିନିଧି ଦଳ ସ୍ୱେଚ୍ଛାସେବକ ଭାବରେ ବଡ଼ଦିନ ଛୁଟିରେ ବାହାରିଲା କଟକରୁ ପାରଳାଖେମୁଣ୍ଡି ଅଭିମୁଖେ । ବାଟରେ ବ୍ରହ୍ମପୁରଠାରେ ସେମାନେ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ପାଇଲେ । ସେମାନଙ୍କ ସହ ବାହାରିଲେ ବ୍ରହ୍ମପୁରର ଦଳେ ଉତ୍ସାହୀ ଯୁବକ । ପାରଳାଖେମୁଣ୍ଡିରେ ପହଞ୍ଚି ସେମାନେ ସମ୍ମିଳନୀ - ମଣ୍ଡପ ପ୍ରସ୍ତୁତଠାରୁ ଆରମ୍ଭକରି ପ୍ରତିନିଧିମାନଙ୍କ ଦେଖ-ରେଖପର୍ଯ୍ୟନ୍ତ ସବୁ କାର୍ଯ୍ୟରେ ସକ୍ରିୟ ଭାବରେ ଯୋଗଦାନ କଲେ ।

ଡିସେମ୍ବର ୨୭ ଓ ୨୮, ୧୯୧୪ରେ ଅନୁଷ୍ଠିତ ଦଶମ ଉତ୍କଳ ସମ୍ମିଳନୀ ଅନେକ ଦିଗରୁ ଉଲ୍ଲେଖ ଯୋଗ୍ୟ । ପାରଳାର ତରୁଣ ରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ଦେବଙ୍କ ଓଡ଼ିଆ ପ୍ରୀତି ଦେଖି ନେତୃସ୍ଥାନୀୟ ବ୍ୟକ୍ତିମାନେ ପ୍ରଥମେ ନିଜକୁ ବିଶ୍ୱାସ କରି ପାରିନଥିଲେ । ସେହି ସମୟରେ ତରୁଣ ଦୟାନିଧିଙ୍କ ପ୍ରଥମ ସାକ୍ଷାତ ହୋଇଥିଲା ତରୁଣ ପାରଳା ମହାରାଜାଙ୍କ ସହିତ । ପାରଳା ମହାରାଜାଙ୍କ ବ୍ୟକ୍ତିତ୍ୱ ତଥା ଓଡ଼ିଆପ୍ରୀତି ଦୟାନିଧିଙ୍କୁ ବିମୋହିତ କଲା । ଜଣେ ବାଗ୍ମୀ ତେଜସ୍ୱାନ୍ କର୍ମ ତତ୍ପର ଯୁବକ ଭାବରେ ଦୟାନିଧି ସମସ୍ତଙ୍କ ଦ୍ୱାରା ଆଦୃତ ହେଲେ । ବିଶେଷତଃ ତରୁଣ ଗଜପତିଙ୍କ ସେ ଶ୍ରଦ୍ଧା ଭାଜନ ହୋଇଥିଲେ । ଟେକ୍କାଲିର ରାଜକୁମାରଙ୍କ ସହିତ ମଧ୍ୟ ଦୟାନିଧିଙ୍କ ସଂଯୋସ୍ଥାପନ ହୋଇଥିଲା । ଜଳନ୍ତର, ମଞ୍ଜୁଷା ପ୍ରଭୃତି ବିଚ୍ଛିନ୍ନାଞ୍ଚଳର ବନ୍ଧୁମାନଙ୍କ ସହିତ ଏହି ଅଧିବେଶନରେ ଦୟାନିଧିଙ୍କ ଭାବର ଆଦାନପ୍ରଦାନ ହେଲା । ସେହି ଅଞ୍ଚଳରେ ଶୁଦ୍ଧ ଓଡ଼ିଆ ଭାଷାରେ ଶିକ୍ଷାଦାନ ଯେ ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ, ସେ ଅଞ୍ଚଳର ବନ୍ଧୁମାନଙ୍କ ସହିତ କଥୋପକଥନ ପରେ, ତାହା ସେ ନିଜେ ଅନୁଭବ କଲେ । ଛାତ୍ର ପ୍ରତିନିଧିମାନଙ୍କ ବକ୍ତୃତା ସମୟରେ ତାଙ୍କ ଓଜସ୍ୱିନୀ ବକ୍ତୃତା ସମସ୍ତଙ୍କୁ ଉଦ୍‌ବୁଦ୍ଧ କଲା । ଶୁଦ୍ଧ ଓଡ଼ିଆ ଭାଷାରେ ଶିକ୍ଷାଦାନ ପାଇଁ ଉପଯୁକ୍ତ ଶିକ୍ଷକ ଓ ପରିଦର୍ଶକ ନିଯୁକ୍ତି ଉପରେ ଦୟାନିଧି ଗୁରୁତ୍ୱ ଦେଇ ତାଙ୍କ ଭାଷଣ ଦେଇଥିଲେ । ତାଙ୍କର ସଂକ୍ଷିପ୍ତ ଭାଷଣ ପ୍ରଣିଧାନ ଯୋଗ୍ୟ :-

"ମାନନୀୟ ସଭାପତି ମହୋଦୟ, ଉପସ୍ଥିତ ନେତୃସ୍ଥାନୀୟ ଗୁରୁଜନବୃନ୍ଦ ଏବଂ ମୋର ପ୍ରିୟ ଓଡ଼ିଆ ଭାଇ ଓ ଭଉଣୀମାନେ !

ଜଣେ ଛାତ୍ର ପ୍ରତିନିଧିଭାବେ ଉତ୍କଳ ସମ୍ମିଳନୀର ଏହି ଗୁରୁତ୍ୱପୂର୍ଣ୍ଣ ଅଧିବେଶନରେ ଦୁଇ ପଦ କହିବା ପାଇଁ ଅନୁମତି ଦେଇଥିବାରୁ ମୁଁ ସଭାପତିଙ୍କ ନିକଟରେ କୃତଜ୍ଞ । ଦିନେ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଓଡ଼ିଶା ସାମ୍ରାଜ୍ୟର ଗୌରବ ସମ୍ବନ୍ଧରେ ଚିନ୍ତାକଲେ ନିଜକୁ ଧିକ୍କାର କରିବାକୁ ଇଚ୍ଛାହୁଏ । ଆମ ଭିତରେ ସଂହତିର ଅଭାବ ହେତୁ ଅଙ୍ଗ ଅଙ୍ଗମାନେ ପରସ୍ପରଠାରୁ ବିଚ୍ଛିନ୍ନ ହୋଇ ରହିଛୁ । ଊନବିଂଶ ଶତାବ୍ଦୀର ଶେଷ ଭାଗରେ ସମ୍ବଲପୁର ଅଞ୍ଚଳରେ ହିନ୍ଦିଭାଷାର ପ୍ରଚଳନ ହେତୁ ସେଇଠି ଯେମିତି ଅସନ୍ତୋଷର ବହ୍ନି ଜଳିଉଠିଥିଲା ଏବଂ ଭାଷା ଆନ୍ଦୋଳନ ଜରିଆରେ ୧୯୦୫ରେ ସେ ଅଞ୍ଚଳ ଯେମିତି ଓଡ଼ିଶା କମିଶନରେ ଅନ୍ତର୍ଭୁକ୍ତ ହେଲା, ଆଜି ଦକ୍ଷିଣାଞ୍ଚଳରେ ସେହି ଧରଣର ଏକ ଭାଷା ଆନ୍ଦୋଳନ ଆବଶ୍ୟକ । ତାହାହେଲେ ଗଞ୍ଜାମ, କୋରାପୁଟ ତଥା ତତ୍‌ସଂଲଗ୍ନ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ମାନ୍ଦ୍ରାଜ୍ ପ୍ରେସିଡେନ୍‌ସିରୁ ଅଲଗାହୋଇ ଓଡ଼ିଶା କମିଶନ୍‌ରେ ସମ୍ମିଳିତ ହେବ । ଦକ୍ଷିଣ ଓଡ଼ିଶାର ଏହି ଆନ୍ଦୋଳନର ନେତୃତ୍ୱ ନେବାପାଇଁ ପାରଳାଖେମୁଣ୍ଡିର ତରୁଣ ମହାରାଜା ଯେ ଯୋଗ୍ୟତମ ବ୍ୟକ୍ତି ଏହା କହିବା ବାହୁଲ୍ୟ ।

ଓଡ଼ିଆ ଭାଷା ଓ ସାହିତ୍ୟର ପୀଠସ୍ଥଳୀ ଦକ୍ଷିଣାଞ୍ଚଳରେ ବର୍ତ୍ତମାନ ଆମ ଭାଷା, ସାହିତ୍ୟ ଓ ସଂସ୍କୃତି ବିପନ୍ନ । ଏ ଅଞ୍ଚଳରେ ଶୁଦ୍ଧ ଓଡ଼ିଆ ଭାଷାରେ ଶିକ୍ଷାଦାନ କରିବା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏ ଅଞ୍ଚଳର ଶିକ୍ଷା ପରିଦର୍ଶକ ଭାବରେ ମଧ୍ୟ ଓଡ଼ିଆମାନଙ୍କ ନିଯୁକ୍ତି ନିତାନ୍ତ ଆବଶ୍ୟକ । ସମଗ୍ର ଓଡ଼ିଆଭାଷୀ ଅଞ୍ଚଳ ପାଇଁ ଏକ ସ୍ୱତନ୍ତ୍ର ବିଶ୍ୱବିଦ୍ୟାଳୟ ସ୍ଥାପନ କରାଯାଇପାରିଲେ ଆମର ଲକ୍ଷ୍ୟ ନିର୍ଦ୍ଦିଷ୍ଟ ଭାବରେ ସାଧିତ ହେବ । ନେତୃବର୍ଗଙ୍କୁ ସର୍ବୁମତେ ସାହାଯ୍ୟ କରିବାକୁ ଓଡ଼ିଆ ଭାଷୀ ଯୁବସମାଜ କୃତ ସଂକଳ୍ପ । ଆମେ ସଂଘବଦ୍ଧ ହେଲେ ଅଚିରେ ଆମର ଲକ୍ଷ୍ୟସାଧିତ ହୋଇ ପାରିବ, ଏଥିରେ ସନ୍ଦେହର ଅବକାଶ ନାହିଁ । ବନ୍ଦେ ଉତ୍କଳ ଜନନୀ ।"

ଶିକ୍ଷା ପରିଦର୍ଶକ ଭାବେ ନିଯୁକ୍ତି ପାଇବା ପରେ ଦୟାନିଧି ଅନେକ ଥର ପାରଳାଖେମୁଣ୍ଡିକୁ ଗସ୍ତରେ ଯିବାର ସୁଯୋଗ ପାଇ-ଥିଲେ । ସରକାରୀ କାର୍ଯ୍ୟ ଶେଷ କରି ଅବସର ସମୟରେ ସେ ଗ୍ରାମେ ଗ୍ରାମେ ବୁଲି ଓଡ଼ିଆରେ ରୋମାଞ୍ଚକାରୀ ବକ୍ତୃତାମାନ ଦେଇ ଜନସାଧାରଣଙ୍କୁ ଓଡ଼ିଶା ମିଶ୍ରଣ ସମ୍ପର୍କରେ ଅନୁପ୍ରାଣିତ କରୁଥିଲେ । ଏହି ଖବର ପାଇ ପାରଳା ମହାରାଜା ଦୟାନିଧିଙ୍କୁ ଅନେକ ଥର ସାକ୍ଷାତ ପାଇଁ ଡକେଇଥିଲେ । ଉଭୟଙ୍କ ମଧ୍ୟରେ ଓଡ଼ିଆ ଭାଷା ଓ ସାହିତ୍ୟର ଉନ୍ନତି ସାଧନ ପାଇଁ ବିଭିନ୍ନ ପନ୍ଥା ବିଷୟରେ ଆଲୋଚନା ହେଉଥିଲା । ଓଡ଼ିଆ ଭାଷାରେ ଶିକ୍ଷାଦାନ ପ୍ରଣାଳୀରେ ଉନ୍ନତି ସାଧନ ପାଇଁ ବିଭିନ୍ନ ପନ୍ଥା ବିଷୟରେ ମଧ୍ୟ ଆଲୋଚନା ହେଉଥିଲା । ଓଡ଼ିଆ ଭାଷାରେ ଶିକ୍ଷାଦାନ ପ୍ରଣାଳୀରେ ଉନ୍ନତି ସାଧନ ପାଇଁ ଦୟାନିଧିଙ୍କ ପ୍ରସ୍ତାବ କୃଷ୍ଣଚନ୍ଦ୍ର ଗଜପତିଙ୍କ ହୃଦୟସ୍ପର୍ଶ କରିଥିଲା ଏବଂ ପାରଳାଖେମୁଣ୍ଡିରେ ଓଡ଼ିଆ ଭାଷାରେ ସିଦ୍ଧ ପଣ୍ଡିତମାନଙ୍କୁ ଶିକ୍ଷକ ଭାବରେ ନିଯୁକ୍ତ ଦେବା ପାଇଁ ପାରଳା ମହାରାଜା ଦୃଢ଼ ପଦକ୍ଷେପମାନ ନେଇଥିଲେ । ଉଭୟ ସାହିତ୍ୟ ପ୍ରେମୀ ହୋଇଥିବାରୁ ଅନେକ ସମୟରେ ସେମାନଙ୍କ ମଧ୍ୟରେ ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟ ଓ ଗୋପାଳକୃଷ୍ଣଙ୍କ ସାହିତ୍ୟ ସମ୍ପର୍କରେ ଚର୍ଚ୍ଚା ହେଉଥିଲା । ଏ ସମୟରେ ଗଞ୍ଜାମ ଜିଲ୍ଲାରେ ଓଡ଼ିଆ ଭାଷାର ବହୁଳ ପ୍ରସାର ହୋଇଥିଲା । ଦୟାନିଧି ନିଜେ ରାଜମହେନ୍ଦ୍ରୀ ତଥା ଗଞ୍ଜାମ ରହଣି କାଳରେ ତେଲୁଗୁ ଭାଷା ଶିକ୍ଷା କରିଥିଲେ ଏବଂ ତେଲୁଗୁ ପୁସ୍ତକ ପଢ଼ି ପାରୁଥିଲେ । ଦୟାନିଧିଙ୍କ ଅନେକ ତେଲୁଗୁ ବନ୍ଧୁ ଥିଲେ ଏବଂ ସେ ସେମାନଙ୍କୁ ଓଡ଼ିଆ ଭାଷା ଶିଖିବାକୁ ପ୍ରୋତ୍ସାହନ ଦେଉଥିଲେ, ସେସମୟରେ ଓଡ଼ିଆ ଭଦ୍ରବ୍ୟକ୍ତିମାନେ ସାଧାରଣତଃ ବ୍ରହ୍ମପୁର ଓ ପାରଳାଖେମୁଣ୍ଡି ସହରମାନଙ୍କରେ ତେଲୁଗୁରେ କଥାବାର୍ତ୍ତା କରୁଥିଲେ । ସେ ଓଡ଼ିଆ ବନ୍ଧୁମାନଙ୍କୁ ଏ କାର୍ଯ୍ୟରୁ ନିବର୍ତ୍ତାଇବା ପାଇଁ ବହୁତ ଚେଷ୍ଟାକରୁଥିଲେ । ଏପରିକି ସାଧାରଣ ସଭାରେ ଓଡ଼ିଆରେ ବକ୍ତୃତା ଦେବା ସମୟରେ ଏ ବିଷୟ ଉଲ୍ଲେଖ କରୁଥିଲେ । ଦୟାନିଧିଙ୍କ ଏହି ନିର୍ଭୀକତା କୃଷ୍ଣଚନ୍ଦ୍ର ଗଜପତିଙ୍କୁ ଆକୃଷ୍ଟ କରିଥିଲା ।

୧୯୨୧ ପରେ ଅସହଯୋଗ ଆନ୍ଦୋଳନରେ ଯୋଗଦାନ କରି ଦୟାନିଧି ଗଞ୍ଜାମ ଛାଡ଼ି ଆସିବା ପରେ କୃଷ୍ଣଚନ୍ଦ୍ର ଗଜପତିଙ୍କ ସହିତ ତାଙ୍କ ସାକ୍ଷାତର ମାତ୍ରା କମି ଯାଇଥିଲା । ମାନ୍ଦ୍ରାଜସ୍ଥିତ ଓଡ଼ିଆ ଭାଷୀ ଅଞ୍ଚଳକୁ ଓଡ଼ିଶା ସହିତ ମିଶ୍ରଣ କରିବାକୁ ମତ ସଂଗ୍ରହ କରିବାକୁ ତତ୍‌କାଳୀନ ଓଡ଼ିଶାର ପୋଲିଟିକେଲ୍ ଏଜେଣ୍ଟ ସି.ଏଲ୍ ଫିଲିପ୍ ଏବଂ ବିଶାଖା ପାଟଣାର ତତ୍‌କାଳୀନ କଲେକ୍ଟର ଏ.ସି. ଡଫଙ୍କୁ ନେଇ ଫିଲିପ୍-ଡଫ୍ କମିଟି ନିଯୁକ୍ତ ହୋଇଥିଲା, ଏହି ମତାମତ ସଂଗ୍ରହରେ ପାରଳାଖେମୁଣ୍ଡି ମହାରାଜା ଏବଂ ଗଞ୍ଜାମ ଅଞ୍ଚଳର ଅନ୍ୟାନ୍ୟ ମହାରାଜା ଏବଂ ଗଣ୍ୟ ମାନ୍ୟ ବ୍ୟକ୍ତିଙ୍କ ସହିତ କମିଟି ସାକ୍ଷାତ କରିଥିଲା । ସେହି ସମୟରେ ଦୟାନିଧି କଟକରେ ଥିଲେ । କମିଟିର ସାକ୍ଷ୍ୟ ଗ୍ରହଣ ସମୟରେ ଗଞ୍ଜାମ ଅଞ୍ଚଳକୁ ଆସି ସେ ଗଜପତି ବହୁତ ସାହାଯ୍ୟ କରିଥିଲେ । କୃଷ୍ଣଚନ୍ଦ୍ର ଗଜପତି ମଣ୍ଟେଗୋ-ଚେମସ୍‌ଫୋର୍ଡ ରିପୋର୍ଟ ଅନୁଯାୟୀ ଭାଷା ଦୃଷ୍ଟିରୁ ଓଡ଼ିଶାପ୍ରଦେଶ ଗଠନକରିବାପାଇଁ ଦୃଢ଼ ଦାବୀ କରିଥିଲେ ।

ଯଦିଓ ମଧୁସୂଦନ ଦାସ ଏହାକୁ ଏକ ଅବାସ୍ତବ ପ୍ରସ୍ତାବ ବୋଲି ବିରୋଧ କରୁଥିଲେ । ଜୟପୁର, ଟେକ୍‌କାଲୀ, ଜଲନ୍ତର, ମଞ୍ଜୁଷା ପ୍ରଭୃତି ଓଡ଼ିଆ ଜମିଦାରମାନେ ମଧ୍ୟ କୃଷ୍ଣଚନ୍ଦ୍ର ଗଜପତିଙ୍କ ପ୍ରସ୍ତାବକୁ ଦୃଢ଼ ସମର୍ଥନ କରିଥିଲେ । ଦକ୍ଷିଣାଞ୍ଚଳରେ ନିଜର ବ୍ୟକ୍ତିଗତ ଅଭିଜ୍ଞତାରୁ କୃଷ୍ଣଚନ୍ଦ୍ରଙ୍କ ଦାବୀକୁ ଏକ ବାସ୍ତବ ଏବଂ ନ୍ୟାୟୋଚିତ ଦାବୀ ବୋଲି ବିଚାର କରି ମଧୁସୂଦନ ଦାସଙ୍କ ମତକୁ ଖଣ୍ଡନ କରିଥିଲେ ।

୧୯୨୮ ରେ ସାଇମନ୍ କମିଶନଙ୍କ ବିରୁଦ୍ଧରେ ଭାରତୀୟ ଜାତୀୟ କଂଗ୍ରେସ ବୟକଟ୍‌ର ଆହ୍ୱାନ ଦେଇଥିଲେ ମଧ୍ୟ ଓଡ଼ିଶା ପ୍ରଦେଶ ଗଠନର ମୁଖ୍ୟ ବାର୍ତ୍ତାଣୀ କୃଷ୍ଣଚନ୍ଦ୍ର ଗଜପତି କମିଶନକୁ ସ୍ୱାଗତ କରି ବିହାର, ଓଡ଼ିଶା, ମାନ୍ଦ୍ରାଜ, ବଙ୍ଗ ଓ ମଧ୍ୟପ୍ରଦେଶ ଅନ୍ତର୍ଭୁକ୍ତ ଓଡ଼ିଆ ଭାଷୀ ଅଞ୍ଚଳକୁ ନେଇ ଓଡ଼ିଶା ପ୍ରଦେଶ ଗଠନ କରିବା ପାଇଁ କମିଶନ ଆଗରେ ଦାବୀ କରିଥିଲେ । ୧୯୨୮ର କଲିକତା କଂଗ୍ରେସ ଅଧିବେଶନରେ ପଣ୍ଡିତ ମୋତିଲାଲ ନେହେରୁ ଜାତୀୟ କଂଗ୍ରେସ ନୀତି ବିରୁଦ୍ଧରେ ସାଇମନ୍ କମିଶନକୁ ଓଡ଼ିଆମାନଙ୍କ ସ୍ୱାଗତ କରିଥିବା ଆଚରଣକୁ ତୀବ୍ର ନିନ୍ଦାକରି ଓଡ଼ିଆ ସଦସ୍ୟ ମାନଙ୍କଠାରୁ ପ୍ରତିବାଦ ପାଇଥିଲେ । ସେହି ସମୟରେ ସମ୍ବଲପୁରରୁ ପ୍ରକାଶିତ 'ନବଯୁଗ' ସାପ୍ତାହିକ ପତ୍ରିକାରେ ଦୟାନିଧି ମୋତିଲାଲ ନେହେରୁଙ୍କୁ ସମାଲୋଚନା କରିଥିଲେ ଏବଂ କୃଷ୍ଣଚନ୍ଦ୍ର ଗଜପତିଙ୍କ ଭୂମିକାର ସମର୍ଥନ କରିଥିଲେ । ଏ ସମ୍ପର୍କରେ 'ଓଡ଼ିଆ ପ୍ରଦେଶ' ଶୀର୍ଷକ ତାଙ୍କ ସମ୍ପାଦକୀୟର କିୟଦଂଶ ପ୍ରଣିଧାନ ଯୋଗ୍ୟ :-

"**ଯେଉଁ ଜାତିର ପ୍ରାଣ ନାହିଁ, କାର୍ଯ୍ୟକରିବାକୁ ଆସକ୍ତି ନାହିଁ, ସେହି ଜାତିର କଥାଶୁଣୁଛି କିଏ ? ** ଲକ୍ଷ୍ୟ ସ୍ଥାନରେ ପହଞ୍ଚିବା ନିମନ୍ତେ ଯେପରି ସାଧନା ଓ ତ୍ୟାଗ ଦରକାର ଓଡ଼ିଆମାନେ ତାହାକୁ କାଣିଚାଏ ସୁଦ୍ଧା କରି ପାରିଛନ୍ତି ? ଓଡ଼ିଆମାନଙ୍କ ଏପରି ଅବସ୍ଥା ଦେଖିଥିବା କଂଗ୍ରେସର ସଭାପତି ପଣ୍ଡିତ ମୋତିଲାଲ ନେହେରୁ ସେମାନଙ୍କ ପ୍ରତି ଏପରି ଅବଜ୍ଞା ପ୍ରଦର୍ଶନ କରିଥିଲେ । ଓଡ଼ିଆ ଜାତିର ଯଦି ପ୍ରାଣଥାନ୍ତା ସେ ସେପରି କହି ପାରିଥାନ୍ତେ କି ?"

ସେ ପାରଳା ମହାରାଜାଙ୍କ ମହାନୁଭବତାକୁ ପସନ୍ଦ କରୁଥିଲେ ମଧ୍ୟ ରାଜାରାଜୁଡ଼ାଙ୍କୁ ସମାଲୋଚନା କରୁଥିଲେ । କନିକା ରାଜା ଏକଜିକ୍ୟୁଟିଭ୍ କାଉନ୍‌ସିଲର୍ ହେବା ସମୟରେ ସେ ଲେଖିଥିଲେ, "ଆମ୍ଭେମାନେ ବ୍ୟକ୍ତିଗତ ଭାବରେ ତାହାଙ୍କର ସେ ପଦ ପ୍ରାପ୍ତିରେ ଆହ୍ଲାଦିତ ନହେଲେ ସୁଦ୍ଧା, ଓଡ଼ିଆମାନଙ୍କ ଉଦ୍ଦେଶ୍ୟ ସିଦ୍ଧି ନିମନ୍ତେ ସେ ଯଥେଷ୍ଟ ସାହାଯ୍ୟ କରିବେ ବୋଲି ଦୃଢ଼ ଆଶା ପୋଷଣ କରିଥିଲୁଁ, ଆମ୍ଭମାନଙ୍କ ବିଶ୍ୱାସ ସେ ଏହି କାର୍ଯ୍ୟ ଦ୍ୱାରା ତାଙ୍କ ସମ୍ବନ୍ଧରେ ଲୋକମତକୁ ପରିବର୍ତ୍ତନ କରି ପାରିବେ ।"

ପ୍ରଥମ ଗୋଲଟେବୁଲ ବୈଠକରେ ଓଡ଼ିଶା ସମ୍ବନ୍ଧୀୟ ଆଲୋଚନା କାର୍ଯ୍ୟ ନିର୍ଘଣ୍ଟରେ ନଥିଲେ ମଧ୍ୟ କୃଷ୍ଣଚନ୍ଦ୍ର ଗଜପତି ଉଦ୍ୟମରେ ୧୬.୧.୧୯୩୧ରେ ଏ ବିଷୟରେ ଏକ ଯୁକ୍ତିଅନୁଷ୍ଠାନିକ ବକ୍ତୃତା ଦେବାପାଇଁ ତାଙ୍କୁ ଅନୁମତି ମିଳିଥିଲା । ଗଜପତିଙ୍କ ଏହି ସାହସିକ ପଦକ୍ଷେପ ପାଇଁ ଦୟାନିଧି ତାଙ୍କୁ ସାଧୁବାଦ ଜ୍ଞାପନ କରିଥିଲେ, ଯଦିଓ କଂଗ୍ରେସର ଅନେକ ବରିଷ୍ଠ ନେତା କୃଷ୍ଣଚନ୍ଦ୍ର ଗଜପତିଙ୍କୁ ଗୋଲଟେବୁଲ ବୈଠକରେ ଯୋଗଦାନ କରି ଭାରତର ସ୍ୱାର୍ଥ ବିରୁଦ୍ଧରେ ଯାଇଛନ୍ତି ବୋଲି ସମାଲୋଚନା କରିଥିଲେ ।

ସ୍ୱତନ୍ତ୍ର ଓଡ଼ିଶା ଗଠନର ଗତିବିଧି ଦୟାନିଧି ଲିପି ରଖିଥିଲେ । ଓଡ଼ିଶାର ସୀମା ନିର୍ଦ୍ଧାରଣ କରିବା ପାଇଁ ଓଡୋନେଲ୍ କମିଟି ତାଙ୍କ ମନରେ ଯେତିକି ଆଶା ଜାଗରିତ କରିଥିଲା, କୃଷ୍ଣଚନ୍ଦ୍ର ଗଜପତିଙ୍କ ଅଦମ୍ୟ ଉଦ୍ୟମ ସତ୍ତ୍ୱେ କମିଟିର ରିପୋର୍ଟରେ ପାରଳାଖେମୁଣ୍ଡି ଓ ଜୟପୁରକୁ ଓଡ଼ିଶାରୁ ବାଦ ଦେଇ ସୁପାରିଶ କରିବା ତାଙ୍କୁ ସେତିକି କ୍ଷୁବ୍ଧ କରିଥିଲା, ଦୟାନିଧି ସେତେବେଳେ ଥିଲେ ବରଗଡ଼ର ଜଣେ ପ୍ରତିଷ୍ଠିତ ଓକିଲ । ବରଗଡ଼ ଅଞ୍ଚଳର ଜନମତ ସୃଷ୍ଟି କରି ସେ କୃଷ୍ଣଚନ୍ଦ୍ର ଗଜପତିଙ୍କ ପାଖକୁ ପାରଳାଖେମୁଣ୍ଡି ଓ ଜୟପୁର ଉପରେ ଓଡ଼ିଶାର ଦାବୀ ଜଣାଇ ପ୍ରସ୍ତାବମାନ ପଠାଇଥିଲେ । କମିଟିର ଅନ୍ୟ ଦୁଇଜଣ ସଦସ୍ୟ ଶ୍ରୀଯୁକ୍ତ ମେହେଣ୍ଟା ଓ ଶ୍ରୀଯୁକ୍ତ ଫୁକନ୍‌ଙ୍କ ମତକୁ ଖଣ୍ଡନ କରି ଓଡୋନେଲ୍ ଯେଉଁ ସୁପାରିଶ କରିଥିଲେ, ସମଗ୍ର ଓଡ଼ିଆ ଭାଷୀ ଅଞ୍ଚଳର ବିଷାଦର ଛାୟା ଖେଳାଇ ଦେଲା । ପୁଣି ଚାଲିଲା ଜନଜାଗରଣ ଏବଂ ଅବିରତ ଉଦ୍ୟମ ପାରଳାଖେମୁଣ୍ଡି ଓ ଜୟପୁର ଜମିଦାରୀକୁ ଓଡ଼ିଶାରେ ମିଶାଇବା ପାଇଁ ।

ଅପ୍ରେଲ ୧୯୩୩ରେ ଲର୍ଡ଼ଲିନ୍‌ଲିଥିଗୋଙ୍କ ନେତୃତ୍ୱରେ ବ୍ରିଟିଶ ପାର୍ଲିଆମେଣ୍ଟର ଉଭୟ ସଭାରୁ ୧୬ଜଣ ସଦସ୍ୟ ବିଶିଷ୍ଟ ଏକ ସବ୍-କମିଟି ନିଯୁକ୍ତ ହେଲା ପୁଣି ଥରେ ସୀମା ନିର୍ଦ୍ଧାରଣ କରିବା ପାଇଁ । କୃଷ୍ଣଚନ୍ଦ୍ର ଗଜପତି ପ୍ରମୁଖ କେତେଜଣ ବିଶିଷ୍ଟ ଓଡ଼ିଆ ଓଡ଼ିଶା ସପକ୍ଷରେ ଯୁକ୍ତି ବାଢିବା ପାଇଁ ବିଲାତ ଯାତ୍ରାକଲେ । ଜୟପୁର ଜମିଦାରୀକୁ ଓଡ଼ିଶାର ସୀମା ଭିତରେ ରଖିବା ପାଇଁ ସବ୍- କମିଟି ସହଜରେ ରାଜି ହୋଇଗଲେ । କିନ୍ତୁ ପାରଳାଖେମୁଣ୍ଡି ଜମିଦାରୀରେ ଅଧିକ ସଂଖ୍ୟକ ତେଲୁଗୁ ବସବାସ କରୁଥିବାର ରେକର୍ଡ ଥିବାରୁ ପାରଳା-ଖେମୁଣ୍ଡିକୁ ଭାଗଭାଗ କରିବା ପାଇଁ ସବ୍-କମିଟି ପ୍ରଥମେ ବିଚାର

କଲେ । କୃଷ୍ଣଚନ୍ଦ୍ର ଗଜପତିଙ୍କ ଅକ୍ଳାନ୍ତ ପରିଶ୍ରମ ଫଳରେ ମହେନ୍ଦ୍ର-ତନୟା ନଦୀ ପର୍ଯ୍ୟନ୍ତ ପାରଳାଖେମୁଣ୍ଡି ଜମିଦାରୀର ପ୍ରାୟ ଏକ ତୃତୀୟାଂଶକୁ ଓଡ଼ିଶା ସହିତ ସାମିଲ କରିବାକୁ ସବ୍-କମିଟି ସୁପାରିଶ କରିବାକୁ ପ୍ରଥମତଃ ସମ୍ମତ ହୋଇଥିଲେ ମଧ୍ୟ ଅଚାନକ ଚାପରେ ପାରଳାଖେମୁଣ୍ଡିକୁ ଓଡ଼ିଶାରୁ ବାଦ୍ ଦିଆଯାଇଥିଲା । ଓଡ଼ିଆଭାଷୀ ଅଞ୍ଚଳରେ ଅସନ୍ତୋଷର ବହ୍ନି ପ୍ରଜ୍ଜ୍ୱଳିତ ହେବାକୁ ଲାଗିଲା । ପାରଳାଖେମୁଣ୍ଡିରେ ଅସନ୍ତୋଷଜନିତ ଆନ୍ଦୋଳନ ଚରମ ସୀମାରେ ପହଞ୍ଚିଗଲା । କୃଷ୍ଣଚନ୍ଦ୍ର ଗଜପତିଙ୍କ ନେତୃତ୍ୱରେ ଗୋଟିଏ ଦଳ ଭାଇସ୍‌ରୟଙ୍କୁ ଦେଖାକଲେ । ନୂତନ ପ୍ରମାଣ ଓ ମାନଚିତ୍ର ଜରିଆରେ ପାରଳାଖେମୁଣ୍ଡିକୁ ଓଡ଼ିଶାରେ ମିଶାଇବା ପାଇଁ ପୁଣି ଉଦ୍ୟମ କରାଗଲା । ୧୯୩୪ ମଧ୍ୟ ଭାଗରେ ଯେଉଁ ଶ୍ୱେତପତ୍ର ପ୍ରସ୍ତୁତ କରାଗଲା, ପାରଳାଖେମୁଣ୍ଡିର ଅଧିକାଂଶ ଅଞ୍ଚଳ ମାନ୍ଦ୍ରାଜରେ ରହିବାର ବ୍ୟବସ୍ଥା ଥିଲେ ମଧ୍ୟ ପାରଳାଖେମୁଣ୍ଡି ସଦର ଓଡ଼ିଶାରେ ଅନ୍ତର୍ଭୁକ୍ତ କରିବାର ନିଷ୍ପତ୍ତି ନିଆଗଲା ।

ପହିଲା ଅପ୍ରେଲ ୧୯୩୬ ରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଉତ୍ସବରେ ବରଗଡ଼ରେ ଦୟାନିଧି କେବଳ ଏକ ହୃଦୟସ୍ପର୍ଶୀ ଭାଷଣ ଦେଇ ନଥିଲେ, ଗୋପବନ୍ଧୁଙ୍କ ମୃତ୍ୟୁ ପରେ ପାରଳା ମହାରାଜାଙ୍କୁ ଓଡ଼ିଶାର ମୁକୁଟ ବିହୀନ ସମ୍ରାଟ ବୋଲି ଆଖ୍ୟା ଦେଇ ତତ୍କାଳୀନ ଅନେକ ନେତୃସ୍ଥାନୀୟ କଂଗ୍ରେସ ବ୍ୟକ୍ତିଙ୍କର ସମାଲୋଚନାର ପାତ୍ର ହୋଇଥିଲେ ।

୧୯୩୬ରେ କୃଷ୍ଣଚନ୍ଦ୍ର ଗଜପତିଙ୍କ ଜଣେ ବ୍ୟକ୍ତିଗତ ପତ୍ରବାହକ ଠାରୁ ତାଙ୍କ ଦ୍ୱାରା ଗଠିତ ନେସନାଲ୍ ପାର୍ଟି ତରଫରୁ ଓଡ଼ିଶା ବିଧାନ ସଭାକୁ ଛିଡ଼ା ହେବା ପାଇଁ ଆମନ୍ତ୍ରଣ ପାଇ ଥରେ 'ହଁ' କହି ସାରିବା ପରେ, କଂଗ୍ରେସ ପାର୍ଟିରୁ ମଧ୍ୟ ତାଙ୍କୁ ବରଗଡ଼ ନିର୍ବାଚନ ମଣ୍ଡଳୀରୁ ଠିଆ ହେବା ପାଇଁ ଅନୁରୋଧ କରାଯାଇଥିଲା । ସେ ଥିଲେ ଝଦେଡ଼ ପରଧାନଙ୍କର ଜଣେ ସଚ୍ଚୋଟ କଂଗ୍ରେସ କର୍ମୀ । କିନ୍ତୁ ଥରେ ପାରଳା ମହାରାଜାଙ୍କୁ ବଚନ ଦେଇ ସେ ଆଉ ମତ ପରିବର୍ତ୍ତନ କରି ନ ଥିଲେ । ଦୟାନିଧିଙ୍କ ଏହି ରାଜନୈତିକ ସିଦ୍ଧାନ୍ତକୁ ତାଙ୍କ ଜୀବନର ଏକ ବିରାଟ ରାଜନୈତିକ ଭୁଲ୍ ବୋଲି ଅନେକ ମନେ କରିଥିଲେ, କିନ୍ତୁ ସେ ରାଜନୈତିକ ଫାଇଦା ଅପେକ୍ଷା ନୈତିକ ମୂଲ୍ୟବୋଧକୁ ଜୀବନରେ ସବୁବେଳେ ଉଚ୍ଚସ୍ଥାନ ଦେଇ ଆସିଥିଲେ । ତାଙ୍କର ବନ୍ଧୁ ପୂର୍ବତନ ମନ୍ତ୍ରୀ ତଥା ପୂର୍ବତନ ରାଜ୍ୟପାଳ ଶ୍ରୀ ନିତ୍ୟାନନ୍ଦ କାନନ୍‌ଗୋଙ୍କ ଭାଷାରେ "He did not seem to be interested in political pushes He was evidently not interested in seeking position and places which were easily available then,x x x In retrospect, I think him as a rare person in Orissa free from any kind of petty–mindedness and a person of wide aesthetic interests". ବିଶିଷ୍ଟ ରାଜନୀତି ବିଜ୍ଞାନ ଅଧ୍ୟାପକ ଓ ଗବେଷକ ଡକ୍ଟର ପି. ଶଙ୍କର ନାରାୟଣ ପାତ୍ରଙ୍କ ଭାଷାରେ "ଦୟାନିଧି ଥିଲେ ଜଣେ ସତ୍ୟବାଦୀ । ରାଜନୀତିରେ ସେ କସ୍ମିନ୍ କାଳେ ସୁବିଧାବାଦକୁ ପ୍ରଶ୍ରୟ ଦେଉ ନଥିଲେ ।

କୃଷ୍ଣଚନ୍ଦ୍ର ଗଜପତିଙ୍କ ଏବ ଦୟାନିଧିଙ୍କ ସାମାଜିକ, ସାଂସ୍କୃତିକ ଏବଂ ରାଜନୈତିକ ତରଙ୍ଗ ଦୈର୍ଘ୍ୟ ସମାନ ଥିବାରୁ ସେମାନଙ୍କର ସଖ୍ୟ ସ୍ଥାୟୀ ହୋଇ ରହିଲା । ୧୯୪୩ରେ ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ଥାପିତ ହେବା ବେଳେ ଓଡ଼ିଶାର ତତ୍କାଳୀନ ପ୍ରଧାନମନ୍ତ୍ରୀ ପାରଳା ମହାରାଜାଙ୍କୁ ବଧାଇ ଜଣାଇ ଦୟାନିଧି ଲେଖିଥିଲେ "ଉତ୍କଳ ସମ୍ମିଳନୀର ପ୍ରସ୍ତାବକୁ (ପାରଳାଖେମୁଣ୍ଡି ୧୯୧୪) ବାସ୍ତବରେ ପରିଣତ କରି ଆଜି ଆପଣ ପ୍ରକୃତରେ ଓଡ଼ିଶାବାସୀଙ୍କୁ ନେତୃତ୍ୱ ଦେଇଛନ୍ତି । ସେଥିପାଇଁ ଆପଣଙ୍କୁ ଏବଂ ଆପଣଙ୍କ ସରକାରଙ୍କୁ ବଧାଇ ଜଣାଉଛୁ ।" ପାରଳା ମହାରାଜା ଉଚ୍ଚ ପଦବୀରେ ଥିଲେ ସୁଦ୍ଧା ଦୟାନିଧି ନିଜର ସ୍ୱାର୍ଥ ପାଇଁ ତାଙ୍କୁ କୌଣସି ଅନୁରୋଧ କରି ନ ଥିବାରୁ ଦୟାନିଧି ପ୍ରତି ପାରଳା ମହାରାଜାଙ୍କ ଅଶେଷ ସମ୍ମାନ ଥିଲା ।

# ପାରଳାର ଖେମୁଣ୍ଡି ଗଙ୍ଗବଂଶ

□ ଡଃ ହରିହର କାନୁନଗୋ

□ ବଂଶଧାରା, ମହେନ୍ଦ୍ର ତନୟାର ମଧ୍ୟବର୍ତ୍ତୀ ଶର ଶସ୍ୟ-ଶାଳିନୀ ପାରଳା ନଗରୀ ଦେବଗିରି ଓ ଚମ୍ପାଗିରି ଆଦି ଉଚ୍ଚ ପର୍ବତମାଳାର ମଝିରେ ମୌନାବଳୀ ହୋଇ ଶ୍ରୀରାମସ୍ୱାମୀ, ଶ୍ରୀଜଗନ୍ନାଥ ଓ ଦେବୀ ମାଣିକେଶ୍ୱରୀଙ୍କର ଆଶୀର୍ବାଦ ଲାଭକରି ଗଂଗବଂଶୀ ରାଜପତି ରାଜବଂଶକୁ ପରିପାଳନ କରି ଏହି ମାଟିର ଐତିହ୍ୟ ଓ ପରମ୍ପରାକୁ ବଜାୟ ରଖି ପାରିଛି । □

ଖେମୁଣ୍ଡି ରାଜ୍ୟର ଆଦିମ ଇତିହାସ ଘୋର ଅନ୍ଧକାର ମୟ । ଏହି ଅରଣ୍ୟମୟ ପାହାଡ଼ିଆ ରାଜ୍ୟରେ କନ୍ଧ, ଶବର ଜାତିର ପୂର୍ବପୁରୁଷ ଆଦିମ ଅଧିବାସୀମାନେ ବସବାସ କରୁଥିଲେ । ବୈଦିକ ଯୁଗରୁ ଏହି ରାଜ୍ୟର ନାମ ଓ ଅବସ୍ଥା କ'ଣ ଥିଲା ସେ ସମ୍ପର୍କରେ ଐତିହାସିକ ସତ୍ୟତା କିଛି ମିଳୁନାହିଁ । କିନ୍ତୁ ମହାଭାରତରେ ବର୍ଣ୍ଣନା ଅଛି ଯେ ଉତ୍ତର ଭାରତରୁ ଚନ୍ଦ୍ର ବଂଶୀୟ ବଳି ରାଜପୁତ୍ର ସୁଦେଷ୍ଣା ଗର୍ଭ ସମ୍ଭୂତ କଳିଙ୍ଗଦେବ ଏହି ଗଞ୍ଜାମର ଖେମୁଣ୍ଡି ରାଜ୍ୟ ଓ ତାର ପାର୍ଶ୍ୱବର୍ତ୍ତୀ ଅଞ୍ଚଳକୁ ଆସି ନିଜର ଆଧିପତ୍ୟ ବିସ୍ତାର କରିଥିଲେ । ମୁସଲମାନଙ୍କର ଆଗମନ ପୂର୍ବରୁ ସମଗ୍ର ଦକ୍ଷିଣୋତ୍କଳ ରାଜ୍ୟ, ଅସ୍ମୁଲିଙ୍ଗ ଦେଶ ଓ ଆଧୁନିକ ପୁରୀ ଜିଲ୍ଲାର କିଛି ଅଂଶ ମିଶି 'କଳିଙ୍ଗ ଦେଶ' ନାମରେ ଅଭିହିତ ହୋଇଥିଲା । ଏହି କଳିଙ୍ଗ ଦେଶର ରାଜଧାନୀ ଥିଲା ପାରଳାଖେମୁଣ୍ଡି ରାଜ୍ୟ ନିକଟବର୍ତ୍ତୀ ଆଧୁନିକ କଳିଙ୍ଗ ପାଟଣା । କଳିଙ୍ଗରାଜ କଳିଙ୍ଗ ଦେଶରେ ବହୁକାଳ ପର୍ଯ୍ୟନ୍ତ ରାଜତ୍ୱ କରୁଥିଲେ । କାଳକ୍ରମେ ଏହି କଳିଙ୍ଗ ଦେଶ ମୌର୍ଯ୍ୟ, ଗୁପ୍ତ, ଚୈନ, ଚାଳୁକ୍ୟ ଓ ଗଙ୍ଗ ପ୍ରଭୃତି ରାଜାଙ୍କ ଶାସନାଧୀନ ହୋଇ ରହିଥିଲା । କିନ୍ତୁ ଏହା ପୂର୍ବରୁ କଳିଙ୍ଗ ସେହି କନ୍ଧ ଶବର କ୍ଷୁଦ୍ର କ୍ଷୁଦ୍ର ଆଦିବାସୀ ରାଜାମାନଙ୍କ ଦ୍ୱାରା ଶାସିତ ହେଉଥିଲା । ଏହାର ଆଭ୍ୟନ୍ତରୀଣ ଶାସନ ମଧ୍ୟ ଆଦିବାସୀ ରାଜାଙ୍କ ଦ୍ୱାରା ପରିଚାଳିତ ହେଉଥିଲା । ପାରଳା ଖେମୁଣ୍ଡିରୁ ପ୍ରାପ୍ତ ଇନ୍ଦ୍ରବର୍ମାଙ୍କ ତାମ୍ର ଶାସନରୁ ଜଣାଯାଏ ଯେ ଗଙ୍ଗ ରାଜବଂଶ କଳିଙ୍ଗପାଟଣାରେ ରାଜତ୍ୱ କରିବା ସମୟରେ ସେମାନଙ୍କ ମଧ୍ୟରୁ କେତେକ ଏହି ଅଭିଲେଖ ଦାନ କରିଥିଲେ ।

ଏହି ଖେମୁଣ୍ଡି ରାଜ୍ୟର ନାମକରଣ ସମ୍ପର୍କରେ କୌଣସି ଐତିହାସିକ ତଥ୍ୟ ମିଳୁନାହିଁ । କିମ୍ବଦନ୍ତୀ ଅଛି ଯେ ଏହି ଖେମୁଣ୍ଡି ରାଜ୍ୟରେ ବହୁ କାଳରୁ ଖେମୁଣ୍ଡା ବା ଖେମୁଣ୍ଡିଆ ନାମକ କିରାତ ଜାତି ବାସକରି ଆସୁଥିବାରୁ ଏହି ରାଜ୍ୟର ନାମ ହୋଇଥିଲା ଖେମୁଣ୍ଡି । କିନ୍ତୁ ବର୍ତ୍ତମାନ ଏହି ରାଜ୍ୟରେ ଖେମୁଣ୍ଡିଆ ନାମକ ସ୍ୱତନ୍ତ୍ର ଜାତି ଆଉ ନାହାଁନ୍ତି । ବରଂ କନ୍ଧ ଶବରମାନେ ଏହି ରାଜ୍ୟର ମାଳ ପ୍ରଦେଶରେ ବହୁ କାଳରୁ ବାସ କରିଆସୁଥିବାରୁ ସେହିମାନେ କେବଳ ଖେମୁଣ୍ଡିଆ ନାମରେ ଅଭିହିତ ହୋଇଥିବା ସମ୍ଭବପର । କାରଣ ଯିଏ ଯେଉଁ ରାଜ୍ୟରେ ବାସ କରେ, ସେମାନଙ୍କୁ ସେହି ରାଜ୍ୟର ନାମାନୁସାରେ ଅଭିହିତ କରାଯାଇଥାଏ ।

ଏହି ରାଜ୍ୟ ଅନ୍ତର୍ଗତ ଖେମଣ୍ଡା ଗ୍ରାମ କେରଣ୍ଡିମାଳ ମଧ୍ୟରେ ଅବସ୍ଥିତ ଥିଲା । ଏଠାରେ ଥିଲା ଗୋଟିଏ ପ୍ରାଚୀନ କ୍ଷୁଦ୍ର ଦୁର୍ଗ ।

ଆଧୁନିକ ସମଗ୍ର ଖେମୁଣ୍ଡି ରାଜ୍ୟର ମଧ୍ୟଭାଗରେ ଥିଲା ଏହି ରାଜ୍ୟ । ତାହାର ଚତୁର୍ଦ୍ଦିଗରେ ବାସ କରୁଥିଲେ କନ୍ଧ, ଶବର ପ୍ରଭୃତି ଆଦିମ ଅଧିବାସୀମାନେ । ଏହି ଖେମଣ୍ଡା ଗ୍ରାମର ପ୍ରାଚୀନ ଗ୍ରାମ୍ୟାଧିପତି ବା ଦଳପତିଙ୍କୁ ବିନାଶ କରି କିମ୍ବା ଅଧିକାର କରି ରାଜ୍ୟ ସ୍ଥାପନ କରିଥିବା ସମ୍ଭବପର ।

ଆଉ ଏକ କିମ୍ବଦନ୍ତୀ ଅଛି ଯେ, ଖେମୁଣ୍ଡି ଖେମୁଖି ଶବ୍ଦରୁ ଆସିଛି । ଯାହାର ଅର୍ଥ ହେଉଛି ଚୌଷଠି ଯୋଗିନୀ ଭିତରୁ ଜଣେ । ଚୌଷଠି ଯୋଗିନୀ ମଧ୍ୟରୁ କୋଡ଼ିଏ ନମ୍ବର ଯୋଗିନୀ ହେଉଛି 'ଖେମୁଖି' (ଖେମଖି) (P) । ଏହି ଖେମୁଖୀ କାଳକ୍ରମେ ଉଚ୍ଚାରଣରେ ସୁବିଧା ଦୃଷ୍ଟିରୁ ଅପଭ୍ରଂଶ ହୋଇ ଖେମୁଣ୍ଡିରେ ପରିଣତ ହୋଇଛି ।

ଏହି ଖେମୁଣ୍ଡି ରାଜ୍ୟରେ ଗଙ୍ଗବଂଶୀ ରାଜାମାନେ ରାଜତ୍ୱ କରୁଥିଲେ ବୋଲି ପାରଳାଖେମୁଣ୍ଡିର ମୁଖଲିଙ୍ଗ ମନ୍ଦିର, ଶ୍ରୀକୂର୍ମ୍ମପୁର ଚାନ୍ଦିକାର, ଗୁଡାରି କଟକ ଓ ଦାଢ଼ିଶି ଗ୍ରାମସ୍ଥିତ ମନ୍ଦିର ଅଭି-ଲେଖରେ ଥିବା ସମସ୍ତ ଶିଳାଲିପି ଖେମୁଣ୍ଡି ରାଜ୍ୟର ପୁରାତନ ରାଜାମାନଙ୍କ କର୍ତ୍ତୃକ ସଂସ୍ଥାପିତ ହୋଇଛି । ଏହି ତିନ ରାଜ୍ୟରେ ହୋଇଥିବା ସମସ୍ତ ଦାନ ଦେବତ୍ତ୍ୱ ଓ ଇନାମ୍ ଗ୍ରାମମାନଙ୍କ ମଧ୍ୟରୁ ଅଧିକାଂଶ ଦାନୀୟ ବ୍ରାହ୍ମଣ ଓ ଇନାମ୍‌ଦାର ପ୍ରଜାମାନଙ୍କ ପାଖରେ ଥିବା ଖେମୁଣ୍ଡି ରାଜ୍ୟର ପୂର୍ବତନ ରାଜାମାନଙ୍କ ପ୍ରଦତ୍ତ ଦାନପତ୍ର ଓ ତମ୍ବା ପଟାରୁ ପ୍ରମାଣ ମିଳେ । କିନ୍ତୁ ଏହି ଗଙ୍ଗବଂଶୀ ରାଜାମାନଙ୍କର ଖେମୁଣ୍ଡିକୁ ଆଗମନ ବିଷୟରେ ଐତିହାସିକ ସତ୍ୟତା ପ୍ରମାଣିତ ହୋଇନାହିଁ । ଗଙ୍ଗ ବଂଶର ଉତ୍ପତ୍ତି ଓ ଆଗମନ ସମ୍ପର୍କରେ ବିଭିନ୍ନ ସାହିତ୍ୟ ଓ ଇତିହାସର ତଥ୍ୟ ନିମ୍ନରେ ପ୍ରଦତ୍ତ ହେଲା ।

## ଖେମୁଣ୍ଡି ଗଙ୍ଗବଂଶର ଉତ୍ପତ୍ତି

ଗଙ୍ଗବଂଶାବତଂଶ ଚୋଡ଼ଗଙ୍ଗ ଦେବ ଓ ତାହାଙ୍କ ବଂଶଧର ନରସିଂହ ଦେବଙ୍କ ଦାନପତ୍ର, ତାମ୍ର ଶାସନ ଓ ଶିଳାଲେଖରୁ ଜଣାଯାଏ ଯେ ଭାରତବର୍ଷରେ ଗଙ୍ଗବଂଶ ନାମକ କୌଣସି ରାଜବଂଶ ପ୍ରତିଷ୍ଠିତ ନଥିଲା । ବରଂ ଚନ୍ଦ୍ରବଂଶୀ ରୂପେ ନିଜକୁ ଓ ନିଜ ପୂର୍ବ ପୁରୁଷମାନଙ୍କୁ ପରିଚିତ କରାଇଥିଲେ (୨) । କିନ୍ତୁ ବଡ଼ଖେମୁଣ୍ଡି ରାଜବଂଶାବଳୀ ଅନୁସାରେ କଥିତ ଅଛି ଯେ, ବ୍ରାହ୍ମଣ କନ୍ୟା ଗଙ୍ଗାଦେବୀ ଗଙ୍ଗା କୂଳରେ ବାସ କରୁଥିବା ସମୟରେ ତାହାଙ୍କ ଗର୍ଭରୁ ଏବଂ ଲିଙ୍ଗଳେଶ୍ୱର ମହା-ଦେବଙ୍କ ଔରସରୁ ଗଙ୍ଗବଂଶର ଆଦିପୁରୁଷ ଜାତ ହୋଇଥିଲେ । ତାହାଙ୍କ ମାତୃନାମାନୁସାରେ ଗଙ୍ଗବଂଶୀ ବୋଲି ଅଭିହିତ ହୋଇ ଆସୁଛି । କିନ୍ତୁ ଚନ୍ଦ୍ରବଂଶ କେଉଁ କାରଣରୁ ଗଙ୍ଗବଂଶ ନାମରେ ଅଭିହିତ ହେଲା ଏବଂ ସେହି ବଂଶର ଆଦିରାଜା କିଏ ଓ ସେ କାହାଠାରୁ ଜାତ ସେ ସମ୍ପର୍କରେ ଏଠାରେ ଆଲୋଚନା କରାଯାଉଛି ।

ଚୋଡ଼ଗଙ୍ଗଦେବଙ୍କର ତାମ୍ରଶାସନରୁ ଜଣାଯାଏ ଚନ୍ଦ୍ରଙ୍କର ପୁଅ ବୁଧ, ବୁଧଙ୍କର ପୁଅ ପୁରୁରବା, ପୁରୁରବାଙ୍କ ପୁଅ ଆୟୁ, ଆୟୁଙ୍କ ପୁଅ ନହୁଷ, ନହୁଷଙ୍କର ପୁଅ ଯଯାତି, ଯଯାତିଙ୍କର ପୁଅ ତୁର୍ବସୁ ଏବଂ ତୁର୍ବସୁଙ୍କର ପୁଅ ହେଉଛନ୍ତି ଗାଙ୍ଗେୟ । ତୁର୍ବସୁ ବହୁକାଳ ପର୍ଯ୍ୟନ୍ତ ଅପୁତ୍ରିକ ଥିବାରୁ ସେ ଗଙ୍ଗାଦେବୀଙ୍କୁ ଆରାଧନା କରି ତାହାଙ୍କ ଅନୁଗ୍ରହରୁ ପ୍ରାପ୍ତ ହୋଇଥିବା ପୁତ୍ରସନ୍ତାନଙ୍କ ନାମ ଦେଇ-ଥିଲେ ଗାଙ୍ଗେୟ । ଏହି ଗାଙ୍ଗେୟଙ୍କ ସମୟରୁ ତାହାଙ୍କ ବଂଶଧରମାନେ କାଳକ୍ରମେ ରାଜ୍ୟ ଜୟ କରି ଗଙ୍ଗବଂଶୀ ନାମରେ ଅଭିହିତ ହେଲେ (୩) । ଅତଏବ ଗାଙ୍ଗେୟ ହେଉଛନ୍ତି ଗଙ୍ଗବଂଶର ଆଦିରାଜା କିନ୍ତୁ ଏହି ଗାଙ୍ଗେୟଙ୍କ ନାମ ପୁରାଣାଦିରେ ପରିଲକ୍ଷିତ ହୁଏନାହିଁ । ଚନ୍ଦ୍ରଙ୍କପୁତ୍ର ବୁଧଙ୍କଠାରୁ ଯଯାତିଙ୍କ ପୁଅ ତୁର୍ବସୁଙ୍କ ପର୍ଯ୍ୟନ୍ତ ଚନ୍ଦ୍ର-ବଂଶ ସଂପର୍କରେ ପୁରାଣାଦିରେ ଉଲ୍ଲେଖ ଅଛି । କିନ୍ତୁ ତୁର୍ବସୁଙ୍କ ପୁତ୍ର ଗାଙ୍ଗେୟ ବୋଲି ଉଲ୍ଲେଖ ନାହିଁ । ହରିବଂଶରେ ଉଲ୍ଲେଖ ଅଛି ଯେ ତୁର୍ବସୁଙ୍କ ପୁତ୍ର ବହ୍ନି, ବିଷ୍ଣୁପୁରାଣରେ ଅଛି ତାହାଙ୍କ ପୁତ୍ର ଗର୍ଗ ଏବଂ ଶେଷରାଜା ଗାନ୍ଧାର, ବିଷ୍ଣୁପୁରାଣରେ ଅଛି ମରୁତ । ଏହିଭଳି ଭିନ୍ନଭିନ୍ନ ନାମର ଉଲ୍ଲେଖ ଅଛି । କାରଣ ତୁର୍ବସୁବଂଶର ଶେଷ-ରାଜା ବହୁକାଳ ପର୍ଯ୍ୟନ୍ତ ଅସ୍ଥିର ଅବସ୍ଥାରେ କାଳଯାପନ କରୁଥିଲେ । ସେତେବେଳେ ପୁରାଣକାରମାନେ ତାହାଙ୍କ ପୁତ୍ର ଗାଙ୍ଗେୟ ବୋଲି ଉଲ୍ଲେଖ ନକରିବା ବଡ଼ ବିଚିତ୍ର କଥା ନୁହେଁ ।

ନରସିଂହଦେବଙ୍କ ତାମ୍ରଶାସନ ଅନୁସାରେ କୋଳାହଳପୁରରେ ରାଜା ତୁର୍ବସୁଙ୍କ ପୁତ୍ର ଗାଙ୍ଗେୟଙ୍କ ପରେ ତାହାଙ୍କ ବଂଶରେ ବିରୋଚନ, ସାମ୍ନେଦ୍ୟ, ଭସ୍ୱାନ, ଦତ୍ତସେନ, ସୋମଦେବ, ଅର୍କଦତ୍ତ, ଯୌଧେୟ, ଚିତ୍ରାଙ୍ଗଦ, ସିଂହଧ୍ୱଜ, ଧର୍ମ୍ମସ୍ୱୀ, ପରୀକ୍ଷିତ, ଜୟସେନ, ବିଜୟସେନ, ବୃଷଧ୍ୱଜ ଓ ଶତ୍ରୁ ଜନ୍ମହେବା ପରେ ଦ୍ରୁଗଲଭ ଓ କୋଳାହଳ ନାମକ ଗାଙ୍ଗେୟ ରାଜା କ୍ରମାନ୍ୱୟରେ ରାଜତ୍ୱ କରିଥିଲେ । ଯଯାତିଙ୍କ ପୁତ୍ର ତୁର୍ବସୁ କୋଳାହଳପୁରରେ କେଉଁ ରାଜ୍ୟର ରାଜାଥିଲେ ମହାଭାରତରୁ ତାର ପ୍ରମାଣ ମିଳେ । ମହାଭାରତ ଅନୁସାରେ ଚନ୍ଦ୍ରବଂଶୀୟ ମହାରାଜ ଯଯାତି ଏକ ସମୟରେ ସମଗ୍ର ଭାରତବର୍ଷର ଅଧୀଶ୍ୱର ଥିଲେ । ତାହାଙ୍କର ଯଦୁ, ତୁର୍ବସୁ, ଅଣୁ, ପୁରୁ ଓ ଦ୍ରୁହ୍ୟ ନାମକ ପାଞ୍ଚପୁଅ ଥିଲେ । ଯଯାତି ଶେଷ ଜୀବନରେ ନିଜ ପୁତ୍ରମାନଙ୍କ ମଧ୍ୟରୁ ଯଦୁଙ୍କୁ ଦକ୍ଷିଣ ରାଜ୍ୟରେ, ତୁର୍ବସୁଙ୍କୁ ଦକ୍ଷିଣ-ପୂର୍ବ ରାଜ୍ୟରେ, ଅଣୁଙ୍କୁ ଉତ୍ତର ରାଜ୍ୟରେ, ଦ୍ରୁହ୍ୟଙ୍କୁ ପଶ୍ଚିମ ଭାଗରେ ଓ ପୁରୁଙ୍କୁ ମଧ୍ୟଭାରତ ଅଞ୍ଚଳରେ ରହିବା ପାଇଁ ବାଣ୍ଟି ଦେଇଥିଲେ । ଅତଏବ

ଚୈଦିନପୁରର ଭୂକର୍ଣ୍ଣ ଭାରତବର୍ଷର ଦକ୍ଷିଣ ପୂର୍ବ ଅଞ୍ଚଳରେ ରାଜତ୍ୱ କରୁଥିଲେ । ଏହି ତାମ୍ର ଶାସନର ଉଲ୍ଲେଖ ଅନୁସାରେ ଗଙ୍ଗବଂଶୀୟ ରାଜାମାନଙ୍କ ମଧ୍ୟରେ କୋଲାହଳ ଦେବଙ୍କ ନାମାନୁସାରେ ଗଙ୍ଗବାଡ଼ି (ବର୍ତ୍ତମାନ ନାମ ଗଙ୍ଗଓ୍ୱାଡ଼ା) ରାଜ୍ୟର ରାଜଧାନୀ ଥିଲା କୋଲାହଳପୁର । ଏହି କୋଲାହଳପୁର ବା କୋଲ୍‌ଦାରପୁର ବା କଲାହାପୁର କିମ୍ବା କୋଲ୍‌ଦୀପୁର ଓ ଗଙ୍ଗବାଡ଼ି ବର୍ତ୍ତମାନ ଭାରତର ଦକ୍ଷିଣପୂର୍ବ ପ୍ରଦେଶରେ ରହିଛି । ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀରେ ଗଙ୍ଗରାଜାମାନେ ମାନ୍ଦ୍ରାଜ ପ୍ରେସିଡେନ୍‌ସି ଅଧୀନସ୍ଥ କୋଲାପୁର ରାଜ୍ୟରେ ରାଜତ୍ୱ କରୁଥିଲେ (୦) । ଏହି ଗଙ୍ଗବଂଶୀ ରାଜାମାନେ ଦକ୍ଷିଣ ପୂର୍ବ ଅଞ୍ଚଳରେ ମାନ୍ଦ୍ରାଜ ପ୍ରେସିଡେନ୍‌ସିର ଉତ୍ତର ପୂର୍ବାଞ୍ଚଳରେ ରାଜତ୍ୱ କରୁଥିଲେ (୫) । ଭୂକର୍ଣ୍ଣଙ୍କ ପୁଅ ଗାଙ୍ଗେୟଙ୍କ ଠାରୁ କୋଲାହଳ ଦେବଙ୍କ ପର୍ଯ୍ୟନ୍ତ ଗଙ୍ଗବଂଶୀ ରାଜାମାନେ ଏହି ଅଞ୍ଚଳମାନଙ୍କରେ ରାଜତ୍ୱ କରୁଥିବାର ଜଣାଯାଏ । ଏହି ଶତାବ୍ଦୀରେ ଗଙ୍ଗବଂଶୀ ରାଜାମାନଙ୍କ ବ୍ୟତୀତ ମୌର୍ଯ୍ୟ, ରାଷ୍ଟ୍ରକୁଟ, କଦମ୍ବ ଓ ପଲ୍ଲବ ରାଜବଂଶର ରାଜାମାନେ ମଧ୍ୟ ରାଜତ୍ୱ କରୁଥିଲେ । ଖ୍ରୀଷ୍ଟୀୟ ୭ମ ଶତାବ୍ଦୀର ମଧ୍ୟଭାଗରେ ଉତ୍ତରଭାରତରୁ ବିଜୟାଦିତ୍ୟ ନାମକ ଚାଲୁକ୍ୟରାଜା ଦାକ୍ଷିଣାତ୍ୟକୁ ଦିଗ୍‌ବିଜୟ କରିବା ସମୟରେ ନର୍ମଦା ନଦୀ ଅତିକ୍ରମ କରନ୍ତେ ପଲ୍ଲବ ବଂଶୀୟ ତ୍ରିଲୋଚନ ପଲ୍ଲବଙ୍କ ଦ୍ୱାରା ନିହତ ହୋଇ-ଥିଲେ । ତାହାଙ୍କ ପୁତ୍ର ବିଷ୍ଣୁବର୍ଦ୍ଧନ ଗଙ୍ଗବଂଶୀ, ନନ୍ଦବଂଶୀ, ମୌର୍ଯ୍ୟବଂଶୀ, ପଲ୍ଲବବଂଶୀ, ଚୁଟୁ, ଚୈଳ, ଚାଲୁକ୍ୟ ଓ କଦମ୍ବବଂଶୀ ରାଜାମାନଙ୍କୁ ପରାସ୍ତ କରି ଦାକ୍ଷିଣାତ୍ୟରେ ରାଜ୍ୟ ବିସ୍ତାର କଲେ । ବିଷ୍ଣୁବର୍ଦ୍ଧନଙ୍କ ପରେ ଚାଲୁକ୍ୟ ବଂଶ ଦାକ୍ଷିଣାତ୍ୟରେ ୪୯୯ ଶକାବ୍ଦ (୫୭୭ ଖ୍ରୀଷ୍ଟାବ୍ଦ) ଠାରୁ ୧୦୫୬ ଶକାବ୍ଦ (୧୧୩୪ ଖ୍ରୀଷ୍ଟାବ୍ଦ) ପର୍ଯ୍ୟନ୍ତ ପ୍ରାୟ ୭୦୦ ବର୍ଷ ରାଜତ୍ୱ କରିଥିଲେ । ଏହି ସମୟ ମଧ୍ୟରେ ଗଙ୍ଗବଂଶୀ ଓ ଚାଲୁକ୍ୟ-ବଂଶୀ ରାଜାମାନଙ୍କ ଭିତରେ ସଂଘର୍ଷ ହୋଇଥିଲା । ଏହି ସଂଘର୍ଷର ଫଳସ୍ୱରୂପ ୫୭୭ ଖ୍ରୀଷ୍ଟାବ୍ଦରେ ଦକ୍ଷିଣରୁ ଚାଲୁକ୍ୟରାଜାଙ୍କ ଦ୍ୱାରା ପରାସ୍ତ ହୋଇ ରାଜା ବାସୁଦେବ ସମ୍ବଲପୁରର ଫୁଲଶରପାଟଣାରେ ରହି ପରେ ଖ୍ରୀ; ୬୮୯ରେ କଳାହାଣ୍ଡି ରାଜ୍ୟ ଅଧିକାର କଲେ । ବଡ଼ଖେମୁଣ୍ଡି ରାଜାମାନେ ଭିତିମାନ୍ୟ ସୂତ୍ର କେଶରୀ ଉପାଧି ଧାରଣ କରି ରାଜାଭିଷିକ୍ତ ହୋଇଥିଲେ । ଏହି ଗଙ୍ଗଶ୍ରୀ କେଶରୀ ଉପାଧି ଅଦ୍ୟାବଧି ପୁରୁଷାନୁକ୍ରମେ ବଡ଼ଖେମୁଣ୍ଡି ରାଜାମାନେ ଧାରଣ କରି ଆସୁଛନ୍ତି । ସାଧାରଣତଃ ରାଜାମାନଙ୍କର ପ୍ରଥମ ପୁତ୍ରମାନେ ଯୁବରାଜ ଏବଂ ଅନ୍ୟ ପୁତ୍ରମାନେ ଟିକାୟତ ଓ ଯେନାମଣି ପ୍ରଭୃତି ଆଖ୍ୟା ଲାଭ କରୁଥିଲେ । କଳିଶୋର ପାଟଠାକୁର ଦେବଙ୍କ ସମୟରୁ କାଳଚଣ୍ଡିଦେବଙ୍କ ଆଦେଶକ୍ରମେ ପାଟଣେଶ୍ୱରୀ ଦେବୀଙ୍କ ନାମାନୁସାରେ କଳାକେଶର ପାଟଠାକୁର ଦେବ 'ପାଟଦେଓ' ନାମରେ ଅଭିହିତ ହୋଇ-ଥିଲେ । ଏହି ପାଟଦେଓ ଉପାଧି ବଡ଼ଖେମୁଣ୍ଡିର ଜ୍ୟେଷ୍ଠ ରାଜକୁମାର ମାନେ ଏପର୍ଯ୍ୟନ୍ତ ବହନ କରି ଆସୁଛନ୍ତି ଏବଂ କ୍ରମେ ଏହି ପାଟଦେବୋପାଧି ସର୍ବତ୍ର ପରିବ୍ୟାପ୍ତ ହୋଇଅଛି ।

ଓଡ଼ିଶାର ଗଙ୍ଗବଂଶୀ ଆଦିରାଜା ଚୋଡ଼ଗଙ୍ଗ ଦେବଙ୍କର ଜ୍ୟେଷ୍ଠଭ୍ରାତା ଥିଲେ ବାସୁଦେବ (୬) । ଯେ ଚୋଡ଼ଗଙ୍ଗଙ୍କୁ ଓଡ଼ିଶାର ରାଜସିଂହାସନରେ ବସାଇ ଦିଗ୍‌ବିଜୟ କରିବା ଅବସ୍ଥାରେ ଓଡ଼ିଶାର ପଶ୍ଚିମାଞ୍ଚଳକୁ ଯାଇ କରି ଫୁଲଶରପାଟଣା (ବର୍ତ୍ତମାନର ରାଣୀପୁର ଝରିଆଲ) ଠାରେ ୬୧୧ ଶକାବ୍ଦ (୬୮୯ ଖ୍ରୀଷ୍ଟାବ୍ଦ) ରେ ନିଜର ଆଧିପତ୍ୟ ପ୍ରତିଷ୍ଠା କରି-ଥିଲେ । ସେଠାରେ ତାଙ୍କର ଅଠର ପୁରୁଷ ଗତହେବା ପରେ ତାହାଙ୍କ ବଂଶରେ ଗୋପୀନାଥଦେବ ଓ ନାରାୟଣଦେବ ଦୁଇ ରାଜକୁମାର ଜନ୍ମ ଗ୍ରହଣ କଲେ । ଏହି ରାଜପୁତ୍ର ଦୁଇଟି ନାବାଳକ ଥିବା ସମୟରେ ଅଧିନସ୍ଥ ବିଦ୍ରୋହୀ ରାଜାମାନେ ସେମାନଙ୍କୁ ଏହି ଅଞ୍ଚଳରୁ ବିତାଡ଼ିତ କଲେ । ଉପାୟଶୂନ୍ୟ ହୋଇ ନାରାୟଣ ଦେବ ଓ ଗୋପୀନାଥଦେବ ଦକ୍ଷିଣରେ ଗଞ୍ଜାମକୁ ୧୩୮୩ ଶକାବ୍ଦରେ ଆସି ଏଠାରେ ଖେମୁଣ୍ଡି ରାଜ୍ୟ ସ୍ଥାପନ କଲେ । ପରବର୍ତ୍ତୀ ସମୟରେ ଖେମୁଣ୍ଡି ରାଜ୍ୟ ଭାଗଭାଗ ହେବାରୁ ନାରାୟଣଦେବ ପାରଳାଖେମୁଣ୍ଡିରେ ଏବଂ ଗୋପୀନାଥଦେବ ଶୁକ୍ତାଗଡ଼ରେ ରାଜଧାନୀ ସ୍ଥାପନ କଲେ । ଗୋପୀନାଥ ଦେବଙ୍କ ମୃତ୍ୟୁପରେ ତାହାଙ୍କ ଜ୍ୟେଷ୍ଠପୁତ୍ର ସୋମଲିଙ୍ଗଭାନୁ ବା ସ୍ୱର୍ଣ୍ଣଭାନୁଦେବ ବଡ଼ଖେମୁଣ୍ଡି ରାଜ୍ୟରେ ରାଜା ହୋଇଥିଲେ । ଏହି ରାଜକୁମାର ଦ୍ୱୟଙ୍କ ଫୁଲଝର ପାଟଣା ପରିତ୍ୟାଗ କରି ଗଞ୍ଜାମର ଖେମୁଣ୍ଡି ରାଜ୍ୟକୁ ଆସିବା ସଂପର୍କରେ ମତପାର୍ଥକ୍ୟ ପରିଲକ୍ଷିତ ହୁଏ । କେହି କେହି କହନ୍ତି ଗୋପୀନାଥ ଦେବ ଓ ନାରାୟଣ ଦେବ ନାବାଳକ ଥିବା ସମୟରେ ପଶ୍ଚିମ ଭାରତରୁ ଚୌହାନ ବଂଶୀୟ କ୍ଷତ୍ରିୟ ରାଜା ମାନଙ୍କ ଦ୍ୱାରା ପରାସ୍ତ ହୋଇ ଗଞ୍ଜାମର ଖେମୁଣ୍ଡି ରାଜ୍ୟକୁ ପଳାଇ ଆସିଥିଲେ । କିମ୍ବା ଏହି ଦୁଇଜଣ ରାଜା ନାବାଳକ ଥିବା ସମୟରେ କଳାହାଣ୍ଡି ଓ ପାଟଣା ରାଜ୍ୟରେ ରାଜାମାନେ ବିଦ୍ରୋହ କରି ଗଙ୍ଗବଂଶୀ ଗୋପୀନାଥ ଦେବ ଓ ନାରାୟଣ ଦେବଙ୍କୁ ପରାସ୍ତ କରିବା ପୂର୍ବକ ସେଠାରୁ ତଡ଼ିଦେବା ଫଳରେ ସେମାନେ ଆସି ଖେମୁଣ୍ଡି ରାଜ୍ୟରେ ରହିଲେ । ଏଥିରୁ ଜଣାପଡ଼େ ଯେ ଚୌହାନ ବଂଶୀୟ କ୍ଷତ୍ରିୟ ରାଜାମାନେ ଏହାଙ୍କୁ ଯୁଦ୍ଧରେ ପରାସ୍ତ କରିବା ଫଳରେ ସେମାନଙ୍କ ଅଧୀନସ୍ଥ କଳାହାଣ୍ଡି ଓ ପାଟଣାର ରାଜାମାନେ ତାହାଙ୍କୁ ସାହାଯ୍ୟ କରିନଥିବେ । ଫଳରେ ସେମାନେ ବାଧ୍ୟହୋଇ ଖେମୁଣ୍ଡି ରାଜ୍ୟକୁ ପଳାଇ ଆସିଥିବେ କିମ୍ବା ଏହି ରାଜପୁତ୍ର ଦ୍ୱୟଙ୍କୁ ତାହାଙ୍କ ଅଧୀନସ୍ଥ କଳାହାଣ୍ଡି ଓ ପାଟଣାର ରାଜାମାନେ ବିଦ୍ରୋହକରି ତଡ଼ି ଦେବା ଫଳରେ ଚୌହାନମାନେ ପଶ୍ଚିମ ଭାରତରୁ ଆସି ରାଣୀପୁର ଝରିଆଲ ଅଞ୍ଚଳରେ ଏବଂ ପରେ ବାମଣ୍ଡା ରାଜ୍ୟରେ ନିଜର ଆଧିପତ୍ୟ ବିସ୍ତାର କରିଥିବେ । ଅତଏବ ଗଙ୍ଗବଂଶୀ ରାଜପୁତ୍ର ଦ୍ୱୟ

ଗୋପୀନାଥ ଦେବ ଓ ନାରାୟଣ ଦେବ ସେଠାରୁ ପଳାଇଆସି ଗଞ୍ଜାମର ଖେମୁଣ୍ଡି ରାଜ୍ୟ ସ୍ଥାପନ କରିଥିଲେ । ୭ । । ସେମାନେ ହଠାତ୍ ଖେମୁଣ୍ଡି ରାଜ୍ୟକୁ ନଆସି ପ୍ରଥମେ ଓଡ଼ିଶାର ଗଜପତି ରାଜା ଅବସ୍ଥାନ କରୁଥିବା 'ବାଣପୁର' ଦୁର୍ଗରେ ଆଶ୍ରୟନେଇ ତତ୍କାଳୀନ ରାଜାଙ୍କୁ ସବିଶେଷ ଅବଗତ କରାଇ ତାହାଙ୍କ ପରାମର୍ଶ କ୍ରମେ ଖେମୁଣ୍ଡି ରାଜ୍ୟକୁ ଆସିଥିଲେ । ସେତେବେଳେ ଧରାକୋଟ ଓ ଆଠଗଡ଼ର ରାଜା ଏହି ଦୁଇ ରାଜକୁମାରଙ୍କୁ ସାହାଯ୍ୟ କରିଥିଲେ ଓ ନିଜର ସୈନ୍ୟସାମନ୍ତ ଓ ସେନାପତିମାନଙ୍କୁ ଖେମୁଣ୍ଡି ରାଜ୍ୟକୁ ପଠାଇ ଥିଲେ । ସେମାନେ କେରାଣ୍ଡିମାଳର ଖେମଣ୍ଡା ଗ୍ରାମର ଅନାର୍ଯ୍ୟ ରାଜାଙ୍କୁ ପରାସ୍ତ କରି କିମ୍ବା ତାହାଙ୍କୁ କୌଶଳରେ କରାୟତ୍ତ କରି ତାହାଙ୍କ ରାଜ୍ୟ ଅଧିକାର କରିଥିଲେ । କାଳକ୍ରମେ ଏହି ରାଜ୍ୟର ଅନ୍ୟାନ୍ୟ ଅଞ୍ଚଳକୁ କରାୟତ୍ତ କରି ତତ୍କାଳୀନ ବିଶାଖାପାଟଣା ଜିଲ୍ଲାର ଗୁଣୁପୁର ତାଲୁକାର ଆଠମାଇଲ ଉତ୍ତରକୁ ବଂଶଧାରା ନଦୀକୂଳରେ ଗୁଡ଼ାରି କଟକ ଠାରେ ନିଜ ରାଜ୍ୟର ରାଜଧାନୀ ସ୍ଥାପନ କରିଥିବା ସମ୍ଭବପର । କେହି କେହି ଏହି ଗୁଡ଼ାରି କଟକ ( ବାରଣାସୀ କଟକ ) କାଶୀ ନଗରକୁ ମଧ୍ୟ ଚିହ୍ନିତ କରିଥାନ୍ତି । ଏହି ଖେମୁଣ୍ଡି ରାଜ୍ୟ ଜୟକରିବା ପରେ ଯେଉଁ ଅଂଶରେ ରହି ସେମାନେ ରାଜତ୍ୱ କରିଥିବେ ସେହି ପୂର୍ବପୁରୁଷଙ୍କ ପ୍ରତିଷ୍ଠିତ ଗଡ଼ର ନାମାନୁସାରେ ଗୁଡ଼ାରି ନାମ ଦାନ କରିଥିବେ ।

ସୁବର୍ଣ୍ଣଭାନୁ ବା ସୋମଲିଙ୍ଗଭାନୁଦେବ (ଖ୍ରୀ:ଅ: ୧୫୧୭ - ୧୫୬୭) ଶାସନରେ ସୁବିଧା ଦୃଷ୍ଟିରୁ ଗୁଡ଼ାରି, ଆଇତିଲ୍, ନନ୍ଦପୁର ଓ ଗଦାପୁର ପ୍ରଭୃତି ଚାରୋଟି ଭାଗରେ ବିଭକ୍ତ କରାଇଥିଲେ । ପ୍ରଥମ ଗୁଡ଼ାରି ରାଜ୍ୟକୁ ସେ ନିଜେ ପରିଚାଳନା କରୁଥିଲେ । ଦ୍ୱିତୀୟ ଭାଗର ଆଇତିଲ୍ ରାଜ୍ୟ ତାହାଙ୍କର ସାନଭାଇ ପାଟରାଜ ମାଣିକ୍ୟଦେବଙ୍କ ଦ୍ୱାରା ଶାସିତ ହେଉଥିଲା । ତୃତୀୟଭାଗ ନନ୍ଦପୁର ଜନୈକ ଶାସନ କର୍ତ୍ତାଙ୍କ ଦ୍ୱାରା ଏବଂ ଚତୁର୍ଥଭାଗ ଗଦାପୁର ଗଡ଼ରେ ସୁବର୍ଣ୍ଣଭାନୁଙ୍କର ଜନୈକ ବଂଶଧର ଶାସନ କରୁଥିଲେ । ସମସ୍ତେ ସୋମଲିଙ୍ଗଭାନୁଦେବଙ୍କର ଆଦେଶାନୁସାରେ ପରିଚାଳିତ ହେଉଥିଲେ । ଏହି ସମୟରେ ମହାସିଂହ, ବେଲଗଡ଼, ଲଙ୍କାଗଡ଼, ଭୁମୁଡିବନ୍ଧ, ବରକୋଟ, ସୁବର୍ଣ୍ଣଗିରି, କୋଟଗଡ଼, ଗଦାପୁର, ପାଣିଗଣ୍ଡା ଓ ଗୋପୀନାଥପୁର ପ୍ରଭୃତି ଦୁର୍ଗ ଗୁଡ଼ିକ ସୋମଲିଙ୍ଗଭାନୁଙ୍କର ଅଧିକାରରେ ଥିଲା । ଏହି ସୁବର୍ଣ୍ଣଭାନୁଦେବ ନିଜର କନ୍ୟାଙ୍କୁ ନନ୍ଦପୁର ରାଜପୁତ୍ରଙ୍କ ସହିତ ବିବାହ କରାଇ ଯୌତୁକ ସ୍ୱରୂପ ଗୁଡ଼ାରିରାଜ୍ୟ ଓ ଗୁଡ଼ାରିଗଡ଼ ଜାମାତାଙ୍କୁ ପ୍ରଦାନ କରିଥିଲେ । ବିଶାଖାପାଟଣା ଜିଲ୍ଲା ଅନ୍ତର୍ଗତ (ବର୍ତ୍ତମାନ କୋରାପୁଟ ଜିଲ୍ଲାର) ଜୟପୁର – କୁ ସେତେବେଳେ ନନ୍ଦପୁର ବୋଲି କୁହାଯାଉଥିଲା । ଜୟପୁର ରାଜବଂଶାବଳୀ ଅନୁସାରେ ଏହି ଗୁଡ଼ାରି ରାଜ୍ୟ ଗଜପତି ବଂଶରୁ ଯୌତୁକରୂପେ ଜଣେ ରାଜପୁତ୍ର ପାଇଥିଲେ । ଗଙ୍ଗବଂଶୀ ବିନାୟକଦେବ ଶୈଳାବଂଶୀ ପ୍ରତାପ ଗଙ୍ଗରାଜ କନ୍ୟାଙ୍କୁ ବିବାହ କରି ନନ୍ଦପୁର ଗୁଡ଼ାରିରାଜ୍ୟ ଲାଭ କରିଥିଲେ । କିନ୍ତୁ ଭାନୁବଂଶର ରାଜାମାନେ ଗଜପତି ଉପାଧି ପାଇଥିଲେ । ତା' ପୂର୍ବରୁ ମଧ୍ୟ ସେହି ରାଜାମାନଙ୍କର ଗଜପତି ଉପାଧି ଥିଲା । ଯୌତୁକ ସ୍ୱରୂପ ଗୁଡ଼ାରିଗଡ଼ ପାଇବା ପରେ ଖେମୁଣ୍ଡି ରାଜ୍ୟର ମାଳପ୍ରଦେଶ ଅନ୍ତର୍ଗତ ଉଦୟଗିରିରେ ନିଜର ରାଜଧାନୀ ସ୍ଥାପନ କରିଥିଲେ । ସୁବର୍ଣ୍ଣଭାନୁ କର୍ଣ୍ଣସିଂହ ଗଡ଼ରେ ଅବସ୍ଥାନ କଲାବେଳେ ମହେନ୍ଦ୍ର ପର୍ବତର ପାର୍ଶ୍ୱବର୍ତ୍ତୀ ଅନାର୍ଯ୍ୟଜାତିର ଦଳପତିମାନଙ୍କୁ ପରାସ୍ତ କରି ସେମାନଙ୍କର ରାଜ୍ୟ ନିଜ ଅଧିକାର ଭୁକ୍ତ କରିଥିଲେ ।

ଅନ୍ୟ କେତେକ ଐତିହାସିକମାନଙ୍କ ମତରେ ସମଗ୍ର ଖେମୁଣ୍ଡି ରାଜ୍ୟ "ମଧ୍ୟ କଳିଙ୍ଗ"ର ଅନ୍ତର୍ଭୁକ୍ତ ଥିଲା । ଏହି କଳିଙ୍ଗର ରାଜଧାନୀ ଥିଲା ସେତେବେଳେ କଳିଂଗ ପାଟଣା । ବୌଦ୍ଧ ଯୁଗରେ କଳିଂଗର ରାଜାମାନେ ଏଠାରେ ରାଜତ୍ୱ କରୁଥିଲେ । ତା'ପରେ କାଳକ୍ରମେ ମୌର୍ଯ୍ୟ, ଗୁପ୍ତ, ଶୈଳ, ଚାଲୁକ୍ୟ ଓ ଗଂଗ ପ୍ରଭୃତି ରାଜାମାନେ କଳିଂଗରେ ରାଜତ୍ୱ କଲେ । ସେତେବେଳେ ମଧ୍ୟ ଏହି ଖେମୁଣ୍ଡି ରାଜ୍ୟ ବିଶେଷ କରି ପାରଲା ଖେମୁଣ୍ଡି ରାଜ୍ୟରେ ଜନ୍ଧ, ଶବର ବା କିରାତ ମାନେ ଆଧିପତ୍ୟ ବିସ୍ତାର କରିଥିଲେ । ଶୈଳ, ଚାଲୁକ୍ୟ ଓ ଗଂଗ ରାଜାମାନେ କଳିଂଗ ପାଟଣାରେ ଅବସ୍ଥାନ କରିବା ସଂଗେ ସଂଗେ ଅନ୍ୟତମ ରାଜଧାନୀ, ସ୍ୱାସ୍ଥ୍ୟନିବାସ, ଓ ଦେବ ସ୍ଥାନରୂପେ 'ମୁଖଲିଙ୍ଗ' ପ୍ରସିଦ୍ଧି ଲାଭ କରିଥିଲା । ପାରଲାଖେମୁଣ୍ଡିରୁ ପ୍ରାପ୍ତ ଇନ୍ଦ୍ରବର୍ମଙ୍କ ତାମ୍ରଶାସନ ଅନୁସାରେ ଗଙ୍ଗ ରାଜାମାନେ କଳିଙ୍ଗ ପାଟଣାରେ ରାଜତ୍ୱ କରିବା ସମୟରେ ସେମାନଙ୍କ ମଧ୍ୟରୁ କେହି ଏହି ଶାସନ ଦାନ କରିଥିଲେ । ଏତଦ୍ ବ୍ୟତୀତ ଗଙ୍ଗବଂଶୀ ରାଜା ଚୋଡ଼ଗଙ୍ଗ ଦେବଙ୍କ ପିତାମହ ବଜ୍ରହସ୍ତ ୯୧୬ ଶକାବ୍ଦରେ (ଖ୍ରୀ: ଅ: ୯୯୪) ରେ କଳିଙ୍ଗ ଦେଶ ଜୟକରି କଳିଙ୍ଗ ପାଟଣାରେ ରାଜତ୍ୱ କରୁଥିଲେ ବୋଲି ତାମ୍ରଶାସନରେ ଉଲ୍ଲେଖ ଅଛି । ପୁଣି ଦାନାର୍ଣ୍ଣବ, ଗୁଣାର୍ଣ୍ଣବ, ନରସିଂହ, ବଜ୍ରହସ୍ତ ଓ କାମାର୍ଣ୍ଣବ ପ୍ରଭୃତି ଗଙ୍ଗବଂଶୀ ରାଜାମାନେ ଏକ ସମୟରେ ତଳ କଳିଙ୍ଗରେ (ତୈଲଙ୍ଗ ଦେଶରେ) ରାଜତ୍ୱ କରୁଥିଲେ । ଓଡ଼ିଶାର ଗଙ୍ଗବଂଶୀ ଆଦି ରାଜା ଚୋଡ଼ଗଙ୍ଗଙ୍କର ପିତାମହ ଥିଲେ ବଜ୍ରହସ୍ତ । ଚୋଡ଼ଗଙ୍ଗ – ଦେବ ଓ ନରସିଂହ ଦେବଙ୍କର ତାମ୍ରଶାସନ ଅନୁସାରେ ବଜ୍ରହସ୍ତଦେବ କଳିଙ୍ଗ ରାଜ୍ୟ ଜୟକରି କଳିଙ୍ଗ ନଗରରେ ୯୧୬ ଶକାବ୍ଦ (ଖ୍ରୀ:ଅ: ୯୯୪) ରେ ରାଜ୍ୟାଭିଷିକ୍ତ ହୋଇ "ତ୍ରିକଳିଙ୍ଗ ନାଥ" ଉପାଧି ଧାରଣ କରିଥିଲେ । ବଜ୍ରହସ୍ତଙ୍କ ପୁତ୍ର ରାଜରାଜଦେବ ହେଉଛନ୍ତି ଚୋଡ଼ଗଙ୍ଗ ଦେବଙ୍କର ପିତା । ଏହି ରାଜରାଜଦେବ ଏକଦା କଳିଙ୍ଗ ପାଟଣାରୁ ଦାକ୍ଷିଣାତ୍ୟକୁ ସସୈନ୍ୟେ ଯାତ୍ରା କରି ଶୈଳ ଦେଶର ରାଜଧାନୀ ବେଙ୍ଗୀ ଦୁର୍ଗକୁ ଆକ୍ରମଣ କରିଥିଲେ ଏବଂ ଶୈଳରାଜ କୁଳୋତ୍ତୁଙ୍ଗଙ୍କୁ

ପରାସ୍ତ କରି ତାହାଙ୍କ ରାଜଧାନୀ ବେଙ୍ଗୀ ଦୁର୍ଗ ଅଧିକାର କରିଥିଲେ । ଏହି ବେଙ୍ଗୀଦୁର୍ଗ ଗୋଦାବରୀ ଜିଲ୍ଲା ଏଲୋର ତାଲୁକାର ଅନ୍ତର୍ଭୁକ୍ତ ଥିଲା । କୁଲୋତ୍ତୁଙ୍ଗଙ୍କର ପିତୃବ୍ୟ ବିଜୟାଦିତ୍ୟ ରାଜରାଜଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ଅତି ବିନୟ ଭାବରେ ରାଜରାଜଙ୍କର ଅଧୀନତା ସ୍ୱୀକାର କରିଥିଲେ ଏବଂ କୁଲୋତ୍ତୁଙ୍ଗଙ୍କ କନ୍ୟା ରାଜସୁନ୍ଦରୀଙ୍କୁ ପତ୍ନୀ ରୂପରେ ତାଙ୍କୁ ଅର୍ପଣ କରିଥିଲେ । ରାଜରାଜଦେବ ରାଜସୁନ୍ଦରୀଙ୍କୁ ପାଇ ବେଙ୍ଗୀ ଦୁର୍ଗ ପରିତ୍ୟାଗ ପୂର୍ବକ ନିଜ ରାଜ୍ୟର ରାଜଧାନୀ କଳିଙ୍ଗ ପାଟଣାକୁ ଫେରି ଆସିଥିଲେ । ଶେଷରେ ରାଜରାଜ ଦେବଂକ ଔରସରୁ ଏବଂ ରାଜସୁନ୍ଦରୀଙ୍କ ଗର୍ଭରୁ ଜନ୍ମ ହେଲେ ଚୋଡ଼ଗଙ୍ଗଦେବ । କାଳକ୍ରମେ ଉତ୍କଳର କେଶରୀ ବଂଶୀୟ ଶେଷ ରାଜା ସୁବର୍ଣ୍ଣ କେଶରୀଙ୍କୁ ପରାସ୍ତ କରି ୯୯୯ ଶକାବ୍ଦ (ଖ୍ରୀ:ଅ: ୧୦୭୭) ରେ ଉତ୍କଳ ଓ କଳିଙ୍ଗ ରାଜ୍ୟ "ଉତ୍କଳିଙ୍ଗ" ଦେଶର ଅଧୀଶ୍ୱର ହୋଇଥିଲେ । (୮)

ଅଭିଲେଖ ଅନୁସାରେ ଖ୍ରୀଷ୍ଟୀୟ ଏକାଦଶ ଶତାବ୍ଦୀରେ (ଖ୍ରୀ:ଅ:— ୧୦୭୭) କଳିଙ୍ଗ ରାଜା ରାଜରାଜଦେବ କଳିଙ୍ଗ ନିକଟବର୍ତ୍ତୀ ଖେମୁଣ୍ଡି ରାଜ୍ୟ ଜୟକରି ଗୋଦାବରୀ ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର କରିଥିଲେ । ଏହା ପୂର୍ବରୁ ଖେମୁଣ୍ଡି ରାଜା ବଜ୍ରହସ୍ତ ପର୍ଯ୍ୟନ୍ତ ସ୍ୱତନ୍ତ୍ର ରାଜ୍ୟ ଭାବରେ ପରି- ଗଣିତ ହେଉଥିଲା । ପରବର୍ତ୍ତୀ ସମୟରେ ଏହା ଆତ୍ରେୟ ଗୋତ୍ରୀୟ ଚନ୍ଦ୍ରବଂଶୀ ଗଙ୍ଗରାଜାମାନଂକ ଦ୍ୱାରା ଶାସିତ ହେଲା । ଏକାଦଶ ଶତାବ୍ଦୀର ଶେଷଭାଗରେ ରାଜରାଜଦେବ କଳିଙ୍ଗ ରାଜ୍ୟରେ ଅଭିଷିକ୍ତ ହୋଇ ଦ୍ୱାଦଶ ଶତାବ୍ଦୀର ଦ୍ୱିତୀୟ ଭାଗରେ ଉତ୍କଳକୁ ଜୟକରି ଉତ୍କଳ କଳିଙ୍ଗ ରାଜ୍ୟଭାବରେ ତାଂକ ପୁତ୍ର ଅନନ୍ତବର୍ମା ଚୋଡ଼ଗଂଗ ଦେବ ଶାସନ କରିବାକୁ ଲାଗିଲେ । ଅତଏବ ଅନନ୍ତବର୍ମା ଚୋଡ଼ଗଂଗଦେବ ଗଂଗବଂଶର ହେଲେ ଗୋଟିଏ ଶାଖା । ଉତ୍କଳର ଗଂଗବଂଶ ଏବଂ ଖେମୁଣ୍ଡି ଗଂଗବଂଶ ଉଭୟ ରାଜାମାନେ ଥିଲେ ଆତ୍ରେୟ ଗୋତ୍ରୀୟ । ସୁତରାଂ ଉତ୍କଳର ଗଂଗବଂଶହିଁ ଏହି ଖେମୁଣ୍ଡି ରାଜ୍ୟକୁ ଆସିଥିବା ସମ୍ଭବପର ।

ଏହି ଗଂଗବଂଶ ଉତ୍କଳରୁ କେବେ ଖେମୁଣ୍ଡି ରାଜ୍ୟକୁ ଆସିଲା ସେ ବିଷୟରେ ବିଶଦ୍ ଆଲୋଚନା କରାଯାଉ । କିମ୍ବଦନ୍ତୀ ଅନୁସାରେ କପିଳେନ୍ଦ୍ରଦେବଙ୍କୁ ଶ୍ରୀ ଜଗନ୍ନାଥଙ୍କର ସ୍ୱପ୍ନାଦେଶ ହୋଇଥିଲା ରାଜା ଜଗନ୍ନାଥଙ୍କୁ ଦର୍ଶନ ପାଇଁ ଗଲାବେଳେ ବାଇଶି ପାହାଚରେ ତାହାଙ୍କ ଉତ୍ତରୀୟ ଖସି ପଡ଼ିବ । ପୁତ୍ର ମାନଙ୍କ ମଧ୍ୟରୁ ଯିଏ ସେହି ପାଛୁଡ଼ାଟି ଉଠାଇ ଦେବ ସେହିଁ କେବଳ ରାଜଗାଦିରେ ବସିବା ପାଇଁ ଯୋଗ୍ୟ । ତା ପର ଦିନ କପିଳେନ୍ଦ୍ରଦେବ ନିଜର ଅଠର ପୁଅ ଏବଂ ଅନ୍ତରର ରକ୍ଷିତା ପୁତ୍ରଙ୍କ ସହିତ ବାଇଶି ପାହାଚରେ ଗଲାବେଳେ ଉତ୍ତରୀୟ ଖସି ପଡ଼ିବାରୁ ସଙ୍ଗେ ସଙ୍ଗେ ପୁରୁଷୋତ୍ତମ ଦେବ ତାକୁ ଉଠାଇଆଣି ରାଜା କପିଳେନ୍ଦ୍ରଙ୍କୁ ଅର୍ପଣ କରନ୍ତେ ସେ ସ୍ୱପ୍ନାଦେଶାନୁସାରେ ତାଙ୍କୁ ରାଜ- ଗାଦିରେ ବସାଇଲେ । ଏଥିରେ କ୍ଷୁବ୍ଧ ହୋଇ ଅଠର ପୁତ୍ର ବିଦ୍ରୋହ- କରି ବିଭିନ୍ନ ସ୍ଥାନକୁ ଚାଲିଯାଇଥିଲେ । ବଡ ପୁଅ କଳାହମିର (କଳାମିହିର / କଳାହମ୍ବିର) ଖେମୁଣ୍ଡି ରାଜ୍ୟକୁ ଆସି ପ୍ରବାଳାକ୍ଷୀ ମୁଣ୍ଡ ଅସୁରକୁ ନିଧନ କରି ପାରଳାଖେମୁଣ୍ଡି ରାଜ୍ୟ ସ୍ଥାପନ କରିଥିଲେ ।

ଏହି କିମ୍ବଦନ୍ତୀ ଓ "ଗଙ୍ଗବଂଶାନୁଚରିତ" ଗ୍ରନ୍ଥ ଅନୁସାରେ କପିଳେନ୍ଦ୍ର ଦେବ ଓ ପୁରୁଷୋତ୍ତମ ଏବଂ କପିଳେଶ୍ୱର ଦେବ ଓ ପୁରୁଷୋତ୍ତମ ଏକ ରାଜା ଭଳି ଜଣାପଡ଼େ । ଗଙ୍ଗବଂଶର ଅବସାନ କାଳରେ କପିଳେନ୍ଦ୍ର- ଦେବ ଉତ୍କଳ ଆକ୍ରମଣ କଲେ । ଉତ୍କଳ ରାଜାମାନଙ୍କ ମଧ୍ୟରୁ ଜ୍ୟେଷ୍ଠପୁତ୍ର ସ୍ୱଦେଶଛାଡ଼ି ଖେମୁଣ୍ଡି ରାଜ୍ୟକୁ ପଳାଇ ଆସିଥିବାରୁ ଏକା ରାଜାଭଳି ପ୍ରତୀୟମାନ ହୁଏ । କିନ୍ତୁ ପ୍ରତାପରୁଦ୍ର ଗଜପତିଙ୍କ ପରେ ମିଳିଥିବା ତାମ୍ରଶାସନରେ ଉଲ୍ଲେଖ ଅଛି—

"ପତ୍ୟୁ ସାମ୍ପ୍ରତି ସରୋଜନୀ ପତ୍ର ସ୍ୱସ୍ତୀ ମସ୍ୟାସ୍ଥା
ତମସାଂନ ସୂଦନାଃ । ପ୍ରକାଶ ସମ୍ବିତ୍ ଦଗମ୍ବରଂ ଜନଃ
ସେ ବଯ୍ୟମୂତମ୍ ସମୁଦ୍ ହରନ୍ତମ୍ । ତଦୀୟ—
—ବଂଶେ ତଦନୁ ପ୍ରତାପ ବାଗ୍ ରୁଚରସ୍ୟ ରାଜା
କପିଳେଶ୍ୱରାହ୍ୱୟଃ । ଅଭୂତଭୂତୋପମ- ପୌରୁଷୋ କ୍ଷତ-—
—ଭସ୍ୟ ରତରଣୋ ଗୁଣୋନ୍ନତଃ । "

ଏହି ଶ୍ଳୋକ ଅନୁସାରେ ରାଜା କପିଳେଶ୍ୱର ଦେବ ହେଉଛନ୍ତି ସୂର୍ଯ୍ୟ- ବଂଶୀ । କିମ୍ବଦନ୍ତୀ ଅନୁସାରେ କପିଳେନ୍ଦ୍ରଦେବ ହେଉଛନ୍ତି ଗଂଗ-— ବଂଶୀ ଏବଂ ତାହାଙ୍କ ପୁତ୍ର ପୁରୁଷୋତ୍ତମ ଦେବ ଚୋଳରାଜ୍ୟ କାଞ୍ଚିଜୟ କରିଥିଲେ । ତାମ୍ରଶାସନରେ କପିଳେଶ୍ୱର ଦେବଙ୍କ ପୁତ୍ର ପୁରୁଷୋତ୍ତମ ଦେବ ବୋଲି ଉଲ୍ଲେଖ ନାହିଁ । ତେଣୁ ଦୁହେଁ ସମ୍ପୂର୍ଣ୍ଣ ଭିନ୍ନ ।

କିନ୍ତୁ ଏହାର ବହୁପୂର୍ବରୁ ଖ୍ରୀ:ଅ: ୧୨୬୭ରୁ ୧୩୩୨ ଖ୍ରୀ:ଅ: ପର୍ଯ୍ୟନ୍ତ ଚୋଳରାଜ୍ୟ ଭାଗ ଭାଗ ହୋଇଯାଇଥିଲା । କିନ୍ତୁ ପଞ୍ଚଦଶ ଶତାବ୍ଦୀରେ ସୂର୍ଯ୍ୟବଂଶୀ ପୁରୁଷୋତ୍ତମ ଦେବ କାଞ୍ଚି ଜୟକରିଥିଲେ ବୋଲି କୌଣସି ଐତିହାସିକ ପ୍ରମାଣ ମିଳେ ନାହିଁ । କିନ୍ତୁ ଏକାଦଶ ଶତାବ୍ଦୀର ଶେଷଭାଗରେ ଚୋଳରାଜ୍ୟ ଓ ବେଂଗୀ ରାଜ୍ୟ କୁଲୋତ୍ତୁଂଗ ଚୋଳଙ୍କ ସମୟରେ ମିଶି ଯାଇଥିଲା । ଦ୍ୱାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ମିଶ୍ରିତ ଉତ୍କଳିଙ୍ଗ ରାଜ୍ୟରେ ଅନନ୍ତବର୍ମା ଚୋଡ଼ଗଙ୍ଗଦେବ ରାଜତ୍ୱ କରୁ- ଥିଲେ । ସେତେବେଳେ ଉତ୍କଳ କଳିଙ୍ଗରାଜ୍ୟ ପଡୋଶୀ ଭଳି ମିଳି ରହି- ଥିଲା । ଏକାଦଶ ଶତାବ୍ଦୀରେ କଳିଂଗ ଓ ବେଂଗୀ ରାଜ୍ୟ ମଧ୍ୟରେ ରହିଥିବା ଶତ୍ରୁତା ଉତ୍କଳ ଓ ଚୋଳ ରାଜ୍ୟ ମଧ୍ୟରେ କ୍ରମେ ବ୍ୟାପି ଯାଇଥିଲା । ଅତଏବ ଦ୍ୱାଦଶ ଶତାବ୍ଦୀରେ କଳିଙ୍ଗ ଉତ୍କଳ ମିଶିରହି ଥିବାରୁ ଏବଂ ଦକ୍ଷିଣରେ ବେଂଗୀ ଓ ଚୋଳରାଜ୍ୟ ମିଶି ରହିଥିବାରୁ

କଳିଙ୍ଗ ଓ ବେଙ୍ଗୀ ରାଜ୍ୟ ମଧ୍ୟରେ ହୋଇଥିବା ଶତ୍ରୁତା ଉତ୍କଳ ଓ ତ୍ରୈଲ ରାଜ୍ୟ ମଧ୍ୟରେ ବ୍ୟାପି ଯାଇଥିଲା । ଖ୍ରୀଷ୍ଟୀୟ ତ୍ରୟୋଦଶ ଶତାବ୍ଦୀର ଶେଷ କିମ୍ବା ଚତୁର୍ଦ୍ଦଶ ଶତାବ୍ଦୀର ଆରମ୍ଭର ମଧ୍ୟଭାଗରେ ତ୍ରୈଲ-ରାଜ୍ୟରେ ବିପ୍ଳବ ଦେଖାଦେଲା । ଫଳରେ ଉତ୍କଳର ରାଜାମାନେ ତ୍ରୈଲ ରାଜ୍ୟ ଉପରେ ଆକ୍ରମଣ କଲେ । ପୁରୁଷୋତ୍ତମ ଦେବ ସୈନ୍ୟ ସାମନ୍ତ ଧରି ତ୍ରୈଲ ରାଜ୍ୟ ଆକ୍ରମଣ କରିଥିବାରୁ ତାହାଙ୍କୁ କାଞ୍ଚି ବିଜେତା ପୁରୁଷୋତ୍ତମ ବୋଲି କୁହାଯାଏ । ତେଣୁ କିମ୍ବଦନ୍ତୀର ପୁରୁଷୋତ୍ତମ ପଞ୍ଚଦଶ ଶତାବ୍ଦୀର ରାଜା ହୋଇ ନ ଥିବେ । ବରଂ ସେ ତ୍ରୟୋଦଶ କିମ୍ବା ଚତୁର୍ଦ୍ଦଶ ଶତାବ୍ଦୀର ରାଜା ହୋଇଥିବା ସମ୍ଭବପର ।

'ତ୍ରିକାଣ୍ଡ ଶେଷ' ଗ୍ରନ୍ଥର ଉପୋଦ୍‌ଘାତରେ ଏବଂ ମରାଠି ଭାଷାରେ ଲିଖିତ 'କବି ଚରିତ' ଗ୍ରନ୍ଥାନୁସାରେ ପୁରୁଷୋତ୍ତମ ଦେବ କଳିଙ୍ଗ ଦେଶର ରାଜା ଥିଲେ । ସେ ଶାଳିବାହନ ଶକାବ୍ଦ ଚତୁର୍ଦ୍ଦଶ ଶତାବ୍ଦୀର ପୂର୍ବରୁ କଟକ ରାଜଧାନୀରେ ରାଜତ୍ୱ କରୁଥିଲେ । ସେ ଥିଲେ କ୍ଷତ୍ରିୟ । 'ତ୍ରିକାଣ୍ଡ ଶେଷ'*, 'ହାରାବଳୀ' ଓ 'ଏକାକ୍ଷରକୋଷ' ପ୍ରଭୃତି ଗ୍ରନ୍ଥଗୁଡ଼ିକୁ ପୁରୁଷୋତ୍ତମ ଦେବ ଲେଖିଥିଲେ ବୋଲି ଜଣାଯାଏ । ଅତଏବ ଖ୍ରୀଷ୍ଟୀୟ ଚତୁର୍ଦ୍ଦଶ ଶତାବ୍ଦୀରେ ଗଙ୍ଗବଂଶର ପୁରୁଷୋତ୍ତମ ଜଣେ ରାଜା ଥିଲେ । ଶ୍ରୀକୂର୍ମ ମନ୍ଦିର ଗାତ୍ରରେ ଥିବା ଅଭିଲେଖ ଅନୁସାରେ (୯) ଉତ୍କଳର ରାଜା ଥିଲେ ପୁରୁଷୋତ୍ତମ ଦେବ ଏବଂ ତାହାଙ୍କ ପିତା ଥିଲେ ବୀରଭାନୁଦେବ । ପୁରୁଷୋତ୍ତମଙ୍କର ଅଙ୍କ ସମ୍ବତ୍ସରରେ ଶକାବ୍ଦ ବୋଲି ଏଥିରେ ଉଲ୍ଲେଖ ଅଛି । ଅତଏବ ଖ୍ରୀ:ଅ ୧୩୦୮ରୁ ୧୩୨୧ ପର୍ଯ୍ୟନ୍ତ ପୁରୁଷୋତ୍ତମ ଦେବ ରାଜ୍ୟଶାସନ କରୁଥିଲେ । ତ୍ରିକାଣ୍ଡ ଶେଷର ଉପୋଦ୍‌ଘାତରେ ଉଲ୍ଲିଖିତ ପୁରୁଷୋତ୍ତମ ଏବଂ ଶ୍ରୀକୂର୍ମ ଅଭିଲେଖର ପୁରୁଷୋତ୍ତମ ଜଣେ ରାଜା ହୋଇଥିବା ସମ୍ଭବପର । ଏହି ପୁରୁଷୋତ୍ତମ କିମ୍ବଦନ୍ତୀର ପୁରୁଷୋତ୍ତମ ହୋଇଥାଇ ପାରନ୍ତି ।

ଶ୍ରୀକୂର୍ମ ଅଭିଲେଖ ଏବଂ ସୀମାଞ୍ଚଳ ଅଭିଲେଖ ଉପରେ ଭିତ୍ତି କରି ବୀର-ଭାନୁଦେବଙ୍କ ସମୟ ନିରୂପଣ କରାଯାଇ ପାରିବ । ଶ୍ରୀକୂର୍ମ ଅଭିଲେଖରେ ଶାଳିବାହନ ଶକାବ୍ଦ ୧୨୨୮ (ଖ୍ରୀ:ଅ ୧୩୦୬) ସହିତ ସମାନ ହେବା-ପାଇଁ ତିନିଅଙ୍କ ସମ୍ବତ୍ସର ଗୋଟିଏ ଅଛି । ସୀମାଞ୍ଚଳ ମନ୍ଦିର ଅଭିଲେଖରେ ଶାଳିବାହନ ଶକାବ୍ଦ ୧୨୨୯ (ଖ୍ରୀ:ଅ ୧୩୦୭) ସହିତ ସମାନ ହେବା ତିନିଅଙ୍କ ସମ୍ବତ୍ସର ବୋଲି ଉଲ୍ଲେଖ ଅଛି । ସୀମାଞ୍ଚଳ ମନ୍ଦିରର ଆଉ ଏକ ଅଭିଲେଖରେ ଶାଳିବାହନ ଶକାବ୍ଦ ୧୨୩୦ (ଖ୍ରୀ:ଅ ୧୩୦୮) ସମାନ ହେବାପାଇଁ ପାଞ୍ଚ ଅଙ୍କ ସମ୍ବତ୍ସର ବୋଲି ଉଲ୍ଲେଖ ରହିଛି । ଅଙ୍କ ଗଣନାର କ୍ରମ ଅନୁସାରେ ପ୍ରଥମ ସମ୍ବତ୍ସରହିଁ ଦ୍ୱିତୀୟ ଅଙ୍କ ବୋଲି କୁହାଯାଏ । ତେଣୁ ଶକାବ୍ଦ ୧୨୨୮ ଅଙ୍କଗଣନାରେ ତିନି ଉଲ୍ଲେଖ ଥିବାରୁ ରାଜ୍ୟ ଶାସନର ଆରମ୍ଭକାଳ ଶକାବ୍ଦ ୧୨୨୭ ହେବା ସମ୍ଭବପର । ଅଙ୍କ ଗଣନା ଆଶ୍ୱିନ ମାସଠାରୁ ଆରମ୍ଭ ହେଉଥିବାରୁ ଶକାବ୍ଦ ୧୨୨୯ ଠିକ୍ ଆଶ୍ୱିନ ମାସ ପର୍ଯ୍ୟନ୍ତ ତିନି ଅଙ୍କ ଭାବରେ ଗଣନା କରାଯାଇଥାଏ । ଶକାବ୍ଦ ୧୨୨୯ ବେଳକୁ ତୃତୀଅଙ୍କ ଆରମ୍ଭ ହୋଇ ୧୨୩୦ ଶକାବ୍ଦର ଆଶ୍ୱିନ ମାସ ଶେଷ ପର୍ଯ୍ୟନ୍ତ ରହୁଛି । ତାପରେ ଅଙ୍କ ସମ୍ବତ୍ସର ପାଞ୍ଚରୁ ଆରମ୍ଭ ହେଉଛି । ଅତଏବ ବୀରଭାନୁଦେବ ଶକାବ୍ଦ ୧୨୨୭ (ଖ୍ରୀ:ଅ: ୧୩୦୫) ଆଶ୍ୱିନ ମାସ ପୂର୍ବରୁ ରାଜ୍ୟ ଶାସନ କରିଥିବା ସମ୍ଭବପର । ପୁରୁଷୋତ୍ତମ ଦେବଙ୍କର ଶ୍ରୀକୂର୍ମ ଅଭିଲେଖରେ ଶାଳିବାହନ ଶକାବ୍ଦ ୧୨୩୧ ସହିତ ତିନିଅଙ୍କ ବୋଲି ଉଲ୍ଲେଖ ଅଛି । ତେଣୁ ପୁରୁଷୋତ୍ତମ ଦେବ ଶକାବ୍ଦ ୧୨୩୦ (ଖ୍ରୀ:ଅ ୧୩୦୮) ରାଜତ୍ୱ କରୁଥିଲେ । ଅତଏବ ବୀରଭାନୁଦେବଙ୍କର ୧୩୦୮ ରାଜତ୍ୱର ଶେଷକାଳ ଥିଲା ଶକାବ୍ଦ ୧୨୩୦ (ଖ୍ରୀ:ଅ: ୧୩୦୮ରୁ) ସୁତରାଂ ବୀରଭାନୁଦେବ ଶକାବ୍ଦ ୧୨୨୭ରୁ ୧୨୩୦ ଅର୍ଥାତ୍ ଖ୍ରୀ:ଅ ୧୩୦୫ରୁ ପର୍ଯ୍ୟନ୍ତ ରାଜତ୍ୱ କରୁଥିଲେ । ବୀରଭାନୁଦେବଙ୍କର ପୁତ୍ର ପୁରୁଷୋତ୍ତମ ଦେବ ରାଜା ହୋଇଥିବା ସମୟରେ ତ୍ରୈଲ ରାଜ୍ୟରେ ବିପ୍ଳବ ଦେଖା-ଦେବାରୁ ଉତ୍କଳ କଳିଙ୍ଗ ତ୍ରୈଲ ତ୍ରିକଳିଙ୍ଗ ରାଜ୍ୟ ପୃଥକ ଏକ ହୋଇ ରହିଥିବା ଯୋଗୁଁ ପୂର୍ବରୁ କଳିଙ୍ଗ ଓ ତ୍ରିକଳିଙ୍ଗ ରାଜ୍ୟ ମଧ୍ୟରେ ରହିଥିବା ଶତ୍ରୁତା ଉତ୍କଳ ଓ ତ୍ରୈଲରାଜ୍ୟକୁ ସଂକ୍ରମିତ ହୋଇଥିଲା । ଫଳରେ ଆମର ଆଲୋଚ୍ୟ କିମ୍ବଦନ୍ତୀ ଅନୁସାରେ କପିଳେନ୍ଦ୍ର ପୁରୁଷୋତ୍ତମ ଏହି ବୀରଭାନୁ ପୁରୁଷୋତ୍ତମ ହୋଇଥାଇ ପାରନ୍ତି ତେଣୁ କିମ୍ବଦନ୍ତୀର କପିଳେନ୍ଦ୍ର ଓ ଅଭିଲେଖର ବୀରଭାନୁ ଜଣେ ରାଜା ହୋଇଥିବା ସମ୍ଭବପର ।

ପୁଣି କପିଳେନ୍ଦ୍ରଙ୍କ କନିଷ୍ଠ ପୁତ୍ର ବାମଣ୍ଡାରେ ରାଜ୍ୟ ସ୍ଥାପନ କରିଥିଲେ ବୋଲି ବାମଣ୍ଡା ରାଜଦରବାରର ସଭାକବି ବାଚସ୍ପତି ମଧୁସୂଦନ ମିଶ୍ରଙ୍କ 'ସାହିତ୍ୟ ରତ୍ନାକର' ଗ୍ରନ୍ଥାବଳୀର ଉପୋଦ୍‌ଘାତରେ ଉଲ୍ଲେଖ ଅଛି । ଅନନ୍ତବର୍ମା ଚୋଡ଼ଗଙ୍ଗଙ୍କ ଦ୍ୱାରା ସ୍ଥାପିତ ବାମଣ୍ଡା ରାଜବଂଶ ଓଡ଼ିଆ ଗଙ୍ଗବଂଶର ଏକ ଶାଖା । ଏହି ଗଙ୍ଗବଂଶରେ ଅନଙ୍ଗଭୀମଦେବ ରାଜା ହୋଇଥିଲେ । କାଳକ୍ରମେ ଏହି ବଂଶରେ ଲାଙ୍ଗୁଳା ନରସିଂହ ଦେବ ଜନ୍ମ ହେଲେ । ତାହାଙ୍କ ଜ୍ୟେଷ୍ଠପୁତ୍ର କପିଳ ଦେବବର୍ମା ପୁରୁଷୋତ୍ତମ ଜଗନ୍ନାଥଙ୍କର ପରମଭକ୍ତ ଥିଲେ । ତାହାଙ୍କ ପାଟ ମହିଷୀଙ୍କ ଗର୍ଭରୁ ଅଠର ପୁଅ ଜନ୍ମ ହୋଇଥିଲେ । ସେମାନଙ୍କ ମଧ୍ୟରୁ ସାନପୁଅ ସୁଭକ୍ତ ଦେବ ବାମଣ୍ଡା ରାଜ୍ୟ ସ୍ଥାପନ କରିଥିଲେ । କିନ୍ତୁ ବାମଣ୍ଡା ରାଜବଂଶାବଳୀରେ ସୁଭକ୍ତଦେବଙ୍କ ନାମ ପରିବର୍ତ୍ତେ ସତ୍ୟଦେବ ବାମଣ୍ଡା ରାଜ୍ୟର ପ୍ରତିଷ୍ଠାତା ବୋଲି ଉଲ୍ଲେଖ ଅଛି । ସେ ଯାହା ହେଉନା କାହିଁକି ବାମଣ୍ଡା ରାଜବଂଶା-ବଳୀରେ ଏହି ପ୍ରସଂଗଟି ଉଲ୍ଲେଖ ଥିବାରୁ ଲାଙ୍ଗୁଳା ନରସିଂହଦେବଙ୍କ ପୁତ୍ର କପିଳଦେବ ବର୍ମା ଥିଲେ ବୋଲି ଜଣାଯାଏ । ଗଙ୍ଗବଂଶାବଳୀ ଅନୁସାରେ ଲାଙ୍ଗୁଳା ନରସିଂହଦେବଙ୍କ ପୁତ୍ର ଥିଲେ ଭାନୁଦେବ । ତେଣୁ

ଏହି ଭାନୁଦେବହିଁ କପିଳଦେବ ହୋଇଥିବା ସମ୍ଭବପର । ଖ୍ରୀଷ୍ଟୀୟ ୧୨୮୪ ରେ ୨୪ ମିଶାଇ (୨୪ଜଣ ରାଜାଙ୍କ ରାଜତ୍ୱ) ଖ୍ରୀଷ୍ଟୀୟ ୧୩୦୮ରେ ଗଙ୍ଗବଂଶୀ ରାଜାମାନେ ରାଜତ୍ୱ କରିଥିଲେ । ଉତ୍କଳ ରାଜବଂଶାବଳୀ ଅନୁସାରେ ପୁରୁଷୋତ୍ତମ ଦେବ ବା ଜଗନ୍ନାଥଦେବଙ୍କ ରାଜ୍ୟଶାସନର ଆରମ୍ଭ କାଳଥିଲା ୧୩୦୮ ଖ୍ରୀଷ୍ଟାବ୍ଦ । ତେଣୁ ଶ୍ରୀକର୍ମ ଓ ସୀମାଞ୍ଚଳ ମନ୍ଦିର ଅଭିଲେଖ ଅନୁସାରେ ବୀରଭାନୁଦେବ ଓ ପୁରୁଷୋତ୍ତମଦେବ ହୋଇଥିବା ସମ୍ଭବପର । ଖେମୁଣ୍ଡି ଗଙ୍ଗବଂଶର ପ୍ରତିଷ୍ଠାତା ନରସିଂହଦେବଙ୍କ ପିତା କପିଳଦେବ ହିଁ ଥିଲେ ବୀରଭାନୁଦେବ । ସେ ସୂର୍ଯ୍ୟ ବଂଶୀୟ କପିଳେନ୍ଦ୍ର ଦେବ ନୁହନ୍ତି ବରଂ ସେ ଗଙ୍ଗବଂଶୀୟ କପିଳେଶ୍ୱରଦେବ ବା କପିଳ ଦେବ । ଅନନ୍ତବର୍ମା ଚୋଡଗଙ୍ଗଦେବ ଉତ୍କଳରେ ଗଙ୍ଗବଂଶ ସ୍ଥାପନ କରିଥିବାରୁ ସେ ହେଉଛନ୍ତି ଗଙ୍ଗବଂଶର ଶାଖା ।

ଅଭିଲେଖ ଅନୁସାରେ ଏବଂ ଅନ୍ୟାନ୍ୟ ପ୍ରମାଣକୁ ଭିତ୍ତିକରି ଓଡିଶା ଗଙ୍ଗବଂଶାବଳୀର ସୂଚନା ନିମ୍ନରେ ପ୍ରଦତ୍ତ ହୋଇଛି ।

ଅନନ୍ତ ବର୍ମା ଚୋଡଗଙ୍ଗଦେବ (ଖ୍ରୀ:ଅ ୧୧୩୨-୪୭)
ମଧୁ କାମାର୍ଣ୍ଣବ ଦେବ (ଖ୍ରୀ:ଅ ୧୧୪୭-୫୭)
ରାଘବ ଦେବ (ଖ୍ରୀ:ଅ ୧୧୫୭-୭୦)
ରାଜରାଜଦେବ (ଖ୍ରୀ:ଅ ୧୧୭୦-୯୬)
ନରସିଂହଦେବ (ଖ୍ରୀ:ଅ ୧୧୯୬-୧୨୧୨)
ଅନଙ୍ଗଭୀମଦେବ (ଖ୍ରୀ:ଅ ୧୨୧୨-୩୯)
ନରସିଂହଦେବ / ରାଜରାଜଦେବ (ଖ୍ରୀ:ଅ ୧୨୩୯- ୫୬)
ଅନଙ୍ଗଭୀମଦେବ (୨ୟ) (ଖ୍ରୀ:ଅ ୧୨୫୬-୬୫ )
ନରସିଂହଦେବ (ରାଜତ୍ୱ କରିନାହାନ୍ତି)
ଭାନୁଦେବ (ଖ୍ରୀ:ଅ ୧୨୬୫-୭୮)
ଲଙ୍ଗୁଳା ନରସିଂହଦେବ (ଖ୍ରୀ:ଅ ୧୨୭୮-୧୩୦୫)
ଭାନୁଦେବ (ଖ୍ରୀ:ଅ ୧୩୦୫- ୦୮)
ପୁରୁଷୋତ୍ତମଦେବ (ଖ୍ରୀ:ଅ ୧୩୦୮- )

ଏହି ବଂଶାବଳୀରେ ଲଙ୍ଗୁଳା ନରସିଂହଦେବଙ୍କ ପୁତ୍ର ଭାନୁଦେବ ବୋଲି ଉଲ୍ଲେଖ ଅଛି । ବାମଣ୍ଡା ରାଜବଂଶାବଳୀରେ କପିଳଦେବ ନାମ ଉଲ୍ଲେଖ ଥିବାରୁ ଏହି ଭାନୁଦେବ ଓ କପିଳ ଦେବ ଜଣେ ରାଜା ହୋଇଥିବା ସମ୍ଭବପର ।

ପାରଳାଖେମୁଣ୍ଡି ରାଜବଂଶାବଳୀ ଅନୁସାରେ ଏବଂ ତମ୍ବାପଟାକୁ ଭିତ୍ତି କରି ରାଜା ମାନଙ୍କର ନାମ, ଅଙ୍କ ଓ ସମ୍ବତ୍ସର ଉଲ୍ଲେଖ କରାଯାଇଛି ।

| ଗଙ୍ଗରାଜାଙ୍କ ନାମ | ଅଙ୍କ | ସମ୍ବତ୍ସର | ଖ୍ରୀଷ୍ଟାବ୍ଦ |
|---|---|---|---|
| ୧- ନରସିଂହଦେବ/ କଳାହସ୍ତିର/ କଳାମିହିର | ୨୦ | ୧୬ | ୧୨୪୫-୬୫ |
| ୨- ମଦନରୁଦ୍ର ଦେବ | ୨୫ | ୨୦ | ୧୨୬୫-୯୦ |
| ୩- ନାରାୟଣ ରୁଦ୍ର ଦେବ | ୧୯ | ୧୫ | ୧୨୯୦-୧୩୦୯ |
| ୪- ଅନନ୍ତ ରୁଦ୍ର ଦେବ | ୨ କିମ୍ବା ୮ | ୧ | ୧୩୦୯-୧୭ |
| ୫- " " " (୨ୟ)/ଆନନ୍ଦଦେବ | ୧୮ କିମ୍ବା ୮ | ୧୪ | ୧୩୧୭-୨୫ |
| ୬ ଜୟରୁଦ୍ର ଦେବ | ୪୨ | ୩୩ | ୧୩୨୫-୬୭ |
| ୭- ଲକ୍ଷ୍ମୀ ନୃସିଂହଭାନୁ ଦେବ | ୨୫ | ୨୦ | ୧୩୬୭-୯୨ |
| ୮- ମଧୁକର୍ଣ୍ଣ ଦେବ (ଲିଙ୍ଗଭାନୁ ଦେବ) | ୩୦ କିମ୍ବା ୩୧ | ୨୪ | ୧୩୯୨-୧୪୨୩ |
| ୯- ମୃତ୍ୟୁଞ୍ଜୟଭାନୁ ଦେବ | ୩୪ | ୨୭ | ୧୪୨୩-୫୭ |
| ୧୦- ମଦନମୋହନ ଭାନୁଦେବ (ମାଧବସୁନ୍ଦର ଭାନୁଦେବ) | ୩୭ କିମ୍ବା ୩୨ | ୨୯ | ୧୪୫୭-୯୪ |
| ୧୧- ଚନ୍ଦ୍ର ବେତାଳ ଭାନୁଦେବ (ଚନ୍ଦ୍ରମୌଳୀ) | ୩୩ | ୨୬ | ୧୪୯୪-୧୫୨୭ |
| ୧୨- ସ୍ୱର୍ଣ୍ଣଲିଙ୍ଗଭାନୁଦେବ (ସୁବର୍ଣ୍ଣଲିଙ୍ଗ ଭାନୁଦେବ) | ୩୯ | ୩୧ | ୧୫୨୭-୬୬ |
| ୧୩- ଶିବଲିଙ୍ଗ ଭାନୁଦେବ | ୨୪ | ୧୯ | ୧୫୬୬-୯୦ |
| ୧୪- ସ୍ୱର୍ଣ୍ଣକେଶରୀ ଭାନୁଦେବ | ୪୦ | ୩୨ | ୧୫୯୦-୧୬୩୦ |
| ୧୫- ମୁକୁନ୍ଦ ରୁଦ୍ର ନାରାୟଣଦେବ | ୨୭ | ୨୧ | ୧୬୩୦-୫୬ |
| ୧୬- ମୁକୁନ୍ଦ ନାରାୟଣ ଦେବ | ୨୩/କିମ୍ବା ୧୮ | ୧୮ | ୧୬୫୬-୭୪ |

| ଗଙ୍ଗରାଜାଙ୍କ ନାମ | ଅଙ୍କ | ସମ୍ବତ୍ସର | ଖ୍ରୀଷ୍ଟାବ୍ଦ |
|---|---|---|---|
| ୧୭- ଅନନ୍ତ ପଦ୍ମନାଭ ଦେବ | ୧୫ କମ୍ପା ୧୨ | ୧୨ | ୧୬୭୪-୮୭ |
| ୧୮- ସର୍ବଜ୍ଞ ଜଗନ୍ନାଥ ନାରାୟଣ ଦେବ (୧ମ) | ୨୧ କମ୍ପା ୧୭ | ୧୭ | ୧୬୮୭-୧୭୦୨ |
| ୧୯- ନରହରି ଦେଓ ବା ନୃସିଂହଦେଓ | ୩୪ କମ୍ପା ୨୭ | ୨୭ | ୧୭୦୨-୨୯ |
| ୨୦- ବୀର ପଦ୍ମନାଭ ନାରାୟଣ ଦେବ | ୧୯ | ୧୭ | ୧୭୨୯-୪୮ |
| ୨୦- ପ୍ରତାପରୁଦ୍ର ନାରାୟଣ ଦେବ | ୩୫ କମ୍ପା ୪ | ୩୧ | ୧୭୪୮-୫୧ |
| ୨୨- ଜଗନ୍ନାଥ ନାରାୟଣ ଦେବ (୨ୟ) | ୪୫ କମ୍ପା ୨୦ | ୩୭ | ୧୭୫୧-୭୧ |
| ୨୩- ଗଜପତି ନାରାୟଣ ଦେବ କମ୍ପା | | | |
| ଗୌରଚନ୍ଦ୍ର ଗଜପତି ନାରାୟଣଦେବ (୧ମ) | ୪୦ କମ୍ପା ୩୧ | ୩୩ | ୧୭୭୧-୧୮୦୨ |
| ୨୪- ପୁରୁଷୋତ୍ତମ ନାରାୟଣ ଦେବ | ୫ କମ୍ପା ୩ | ୪ | ୧୮୦୨-୦୫ |
| ୪୫- ଜଗନ୍ନାଥ ଗଜପତି ନାରାୟଣ ଦେବ (୨ୟ) | (୫୭ କମ୍ପା ୪୭ କମ୍ପା ୭) | ୪୦ | ୧୮୦୫-୪୩ |
| | | | Court of wards |
| | | | ( ୧୮୪୩-୫୦ ) |
| ୨୬- ପ୍ରତାପରୁଦ୍ର ଗଜପତି ନାରାୟଣ ଦେବ | ୫୯ କମ୍ପା ୩୧ | | ୧୮୫୧-୮୮୨ |
| | | | କମ୍ପା ( ୧୮୫୭-୮୫ ) |
| ୨୭- ଗୌରଚନ୍ଦ୍ର ଗଜପତି ନାରାୟଣ ଦେବ (୨ୟ) | ୧୫ କମ୍ପା ୨୨ | | ୧୮୮୨-୧୯୦୪ |
| | | | ( ୧୭୮୫-୦୪ ) |
| ୨୮- କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ | | | ୧୮୦୨-୭୪ |
| | | | ( ୧୯୯୨-୭୪ ) |
| | | | ( ରାଜସ୍ୱ ) |

ଏହି ବଂଶାବଳୀର ୨୫ ନମ୍ବର ରାଜା ଜଗନ୍ନାଥ ନାରାୟଣ ଦେବଙ୍କ ରାଜ୍ୟଶାସନ ଖ୍ରୀଷ୍ଟୀୟ ୧୮୫୦ରୁ ଆରମ୍ଭ ହୋଇଥିଲା । ତେଣୁ ୧୮୫୦ ପରଠାରୁ ରାଜ୍ୟଶାସନର କାଳ ମୋଟ ସମ୍ବତ୍ସରରୁ ବାଦ୍ ଦେଲେ (୧୮୫୦—୫୬୭) ୧୨୮୪ ସମ୍ବତ୍ସରରୁ ଗଂଗବଂଶ ଆରମ୍ଭ ହୋଇଥିଲା । ଖ୍ରୀଷ୍ଟାବ୍ଦ ୧୨୮୪ରେ ୨୪ ଜଣ ରାଜା ରାଜତ୍ୱ କରିଥିବାରୁ ମିଶାଇଲେ ଖ୍ରୀଷ୍ଟାବ୍ଦ ୧୩୦୮ରେ ନରସିଂହ ଦେବ ବା କଳାହମିର ରାଜ୍ୟଶାସନ କରିଥିବା ସମ୍ଭବପର । ଓଡ଼ିଆ ରାଜବଂଶାବଳୀ ଦେଖିଲେ ପୁରୁଷୋତ୍ତମ ଦେବଙ୍କ ରାଜତ୍ୱ କାଳ ହେଉଛି ଖ୍ରୀଷ୍ଟାବ୍ଦ ୧୩୦୮ । ତେଣୁ କମ୍ବଦନ୍ତୀର ପୁରୁଷୋତ୍ତମ ଦେବ ଓ ତାହାଙ୍କ ପୁତ୍ର ଥିଲେ କପିଳେଶ୍ୱର ଏବଂ ଓଡ଼ିଶା ବଂଶାବଳୀର ପୁରୁଷୋତ୍ତମ ଓ ତାହାଙ୍କ ପିତା ଥିଲେ ଭାନୁଦେବ । ଏମାନେହିଁ ତ୍ରୀକୂର୍ମ ଓ ସୀମାଞ୍ଚଳ ଅଭିଲେଖ ଅନୁସାରେ* ବୀରଭାନୁଦେବ ପୁରୁଷୋତ୍ତମ ହୋଇଥିବା ସମ୍ଭବପର । ଲାଙ୍ଗୁଳାନରସିଂହ ଦେବଙ୍କ ପୁତ୍ର ବୀରଭାନୁ ହିଁ କପିଳଦେବ ବୋଲି ବାମଣ୍ଡା ବଂଶାବଳୀରେ ଉଲ୍ଲେଖ ଅଛି ଏଣୁ ଖେମୁଣ୍ଡି ଗଙ୍ଗବଂଶ ପ୍ରତିଷ୍ଠାନ ନରସିଂହ ଦେବଙ୍କ ପିତା କପିଳ ଦେବ ହିଁ ଥିଲେ ବୀର ଭାନୁଦେବ ଏବଂ ସେ ଉତ୍କଳ ରାଜ୍ୟ ଆକ୍ରମଣ କରିଥିବା ସୂର୍ଯ୍ୟବଂଶୀୟ ରାଜା କପିଳେନ୍ଦ୍ର ଦେବ ନୁହନ୍ତି । ବରଂ ସେ ଗଂଗବଂଶୀ କପିଳେଶ୍ୱର ଦେବ । ଉତ୍କଳର ଗଂଗବଂଶ ସ୍ଥାପନ କରିଥିବା ସେହି ଅନନ୍ତବର୍ମା ଚୋଡଗଂଗଦେବ ହେଉଛନ୍ତି ଗଂଗବଂଶର ଶାଖା ।

ଗଙ୍ଗବଂଶାନୁଚରିତ ଅନୁସାରେ କଟକରେ ରାଜଧାନୀ କରି କଳିଙ୍ଗକୁ ରାଜତ୍ୱ କରୁଥିବା କଳିଙ୍ଗ ଭାନୁଦେବ ଦିଗ୍ବିଜୟ କରିବା ସମୟରେ ତାହାଙ୍କ ମନ୍ତ୍ରୀଙ୍କ କୁଟଚକ୍ରାନ୍ତ ଫଳରେ କପିଳେନ୍ଦ୍ର ଦେବ ରାଜା ହୋଇ-ଥିବାର ଶୁଣି ଏହି ଭାନୁଦେବ (କଳ୍କଳ ଭାନୁ) ଗୁଡ଼ାରି କଟକରେ ଯୁଦ୍ଧକରି ଗୁଡ଼ାରିର ଦାକ୍ଷିଣାତ୍ୟ ରାଜାଙ୍କୁ ପରାସ୍ତକରି ସେଠାରେ ରାଜା ହେଲେ । ଏହି ଗୁଡ଼ାରି କଟକ ମଧ୍ୟ କେହି କେହି ଗବେଷକ ପାରଳାଖେମୁଣ୍ଡି ଅନ୍ତର୍ଗତ ବାରଣାସୀ କଟକକୁ (କାଶୀନଗର) ଚିହ୍ନିତ କରିଥାନ୍ତି । ଅଦ୍ୟାବଧି ସେଠାରେ ପୂର୍ବ ରାଜବଂଶର କୀର୍ତ୍ତି ଏବଂ କେତେକ ଐତିହାସିକ ଚିହ୍ନର ସୂଚନା ମିଳୁଛି । କିନ୍ତୁ କାଳଗର୍ଭରେ ସେଗୁଡ଼ିକ କ୍ରମେ ବିଲୀନ ହୋଇ ଯାଉଛି । କଳ୍କଳଭାନୁଙ୍କର ପୂର୍ବବଂଶଧର ମାନେ ଗୁଡ଼ାରିକଟକରେ ରାଜତ୍ୱ କରୁଥିଲେ ।

କ୍ଷମାନ୍ୟସ୍ୱରେ :—

ସ୍ୱର୍ଣ୍ଣଭାନୁଦେବ

କାଳଷଣ୍ଢ ଦେବ

୧— ଚୂଡଙ୍ଗ ଦେବ    ୨— ହରମଣି ଦେବ

ନୃସିଂହ ଦେବ

ଅନନ୍ତ ଦେବ

ପଦ୍ମନାଭ ଦେବ

ପୀତାମ୍ବର ଦେବ    ବାସୁଦେବ

ପୁରୁଷୋତ୍ତମ ଦେବ (ଅନଙ୍ଗଭୀମଦେବ)

ଏହିଭଳି ବଂଶପରଂପରାରେ ଦେଓ ରାଜାମାନେ ଏବଂ ନୃସିଂହ ଓ ଭାନୁ ନାମ ଧାରୀ ମୋଟ୍ ୧୮ ଜଣ ରାଜା [illegible] ପୂର୍ବରୁ ଖେମୁଣ୍ଡି ରାଜ୍ୟରୁ ଗୁଡାରି କଟକରେ ରାଜତ୍ୱ କରୁଥିଲେ ।

୧—ଚୂଡଙ୍ଗଦେବ ବା ଚୋଡଗଙ୍ଗଦେବ

୨—ଟଳାରାଜଦେବ

୩—ଅତରଥଦେବ

୪—ଏକଜଟାକାମଦେବ

୫—ମଦନକାମଦେବ

୬—ଅନଙ୍ଗଭୀମଦେବ (ପୁରୁଷୋତ୍ତମ ଦେବ)

୭—ଲଙ୍ଗୁଳା ନରସିଂହ ଦେବ

୮—ପୁରୁଷୋତ୍ତମ ନୃସିଂହ ଦେବ

୯—କଳି ନରସିଂହ ଦେବ

୧୦—ଅପ୍ରତିମଲ୍ଲ ନରସିଂହ ଦେବ

୧୧—ଅକଟା ନରସିଂହ ଦେବ

୧୨—ପ୍ରତାପ ନରସିଂହ ଦେବ

୧୩—ନିଶଙ୍କଭାନୁ ଦେବ

୧୪—ଅତୁଳ ଭାନୁଦେବ

୧୫—ବୀରଭାନୁ ଦେବ

୧୬—ରୂଚକଭାନୁ ଦେବ

୧୭—ମଧୁଦଭାନୁ ଦେବ

କଜ୍ଜଳଭାନୁ ଦେବ

ଏହି ଗଙ୍ଗବଂଶୀ ରାଜାମାନେ ଖେମୁଣ୍ଡି ରାଜ୍ୟରେ ରାଜତ୍ୱ କରୁଥିଲେ । ଗଞ୍ଜାମର ବିଶାଖା ପାଟଣା ଜିଲ୍ଲାରୁ ମିଳିଥିବା ଗଙ୍ଗ ବଂଶାବଳୀ ଏବଂ ପାରଳା ଖେମୁଣ୍ଡି ଗଡ଼ବଂଶାବଳୀରେ ଖେମୁଣ୍ଡି ରାଜାମାନଙ୍କର ନାମ ସାମ୍ୟ ପରିଲକ୍ଷିତ ହୁଏ ନାହିଁ (୧୦) ।

ଉତ୍କଳୀୟ ରାଜ୍ୟର ଶେଷ ଗଙ୍ଗବଂଶୀ ରାଜା ଚତୁର୍ଥ ଭାନୁଦେବ ୨୧ବର୍ଷ (ଖ୍ରୀ:ଅ ୧୪୧୪-୧୪୩୫) ରାଜତ୍ୱ କରିବାପରେ କପିଳେନ୍ଦ୍ରଦେବ ସେଠାରେ ରାଜା ହେଲେ । ଭାନୁଦେବଙ୍କ ପୁତ୍ର କଜ୍ଜଳଭାନୁ (ଖ୍ରୀ:ଅ ୧୪୩୫-୧୪୪୩) ଦକ୍ଷିଣସ୍ଥ ଗୁଡାରି ଗଡ଼ରେ ରାଜ୍ୟ ସ୍ଥାପନକଲେ । (୧୧)

କିନ୍ତୁ ଡକ୍ଟର ସତ୍ୟନାରାୟଣ ରାଜଗୁରୁଙ୍କ ମତରେ ପାରଳା-ଖେମୁଣ୍ଡି ଗଙ୍ଗବଂଶର ଆଦିପୁରୁଷ ଥିଲେ ଦ୍ୱିତୀୟ ଚୋଡଗଙ୍ଗ ଦେବ । ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀରେ ଓଡ଼ିଶାର ଶେଷ ଗଂଗବଂଶୀ ରାଜା ଚତୁର୍ଥ ଭାନୁଦେବ(ନିଶଙ୍କ ଭାନୁଦେବ) ଅପୁତ୍ରିକ ହୋଇ ଶତ୍ରୁହସ୍ତରେ ନିହତ ହେବାରୁ ତାଙ୍କର ଜଣେ ସାମନ୍ତ ରାଜାଙ୍କ ପୁତ୍ର କପିଳେଶ୍ୱର ଦେବ ଉତ୍କଳର ରାଜସିଂହାସନ ଅଧିକାର କଲେ । ଗଂଗବଂଶ ଉତ୍କଳରୁ ଛିନ୍ନ ହେଲା । କିନ୍ତୁ ସେହି ବଂଶର ଯେଉଁ ଶାଖା ପରମର୍ଦ୍ଦି ଦେବ ଓ ତାଙ୍କର ପୁତ୍ର ଦ୍ୱିତୀୟ ଚୋଡଗଂଗଦେବଙ୍କ ଅଧୀନରେ କଳିଙ୍ଗ ନଗରୀ ଠାରେ ରହି ଶାସନ କରୁଥିଲେ, ସେହି ବଂଶର ଜଣେ ଗଂଗବଂଶୀ ରାଜା କପିଳେଶ୍ୱର ଦେବଙ୍କ ରାଜତ୍ୱ କାଳରେ 'ଖେମୁଣ୍ଡି' ରାଜ୍ୟରେ ରହି ସେଠାକାର ଆଦିବାସୀ ମାନଙ୍କ ସହାୟତାରେ ସ୍ୱାଧୀନତା ରକ୍ଷା କରିଥିଲେ । ବଂଶଧାରାର ସମଗ୍ର ଉପତ୍ୟକା ଅଞ୍ଚଳ ସମେତ ମହେନ୍ଦ୍ରମାଳର ସୁଦୃଢ଼ ଅଞ୍ଚଳ ଓ ନନ୍ଦପୁର ରାଜ୍ୟର କେତେକ ଅଂଶ ଏହି ଖେମୁଣ୍ଡି ମଣ୍ଡଳର ଅନ୍ତର୍ଭୁକ୍ତ ହୋଇଥିଲା । ଦ୍ୱିତୀୟ ଚୋଡଗଙ୍ଗ ଦେବଙ୍କର ଠାରୁ ଅର୍ଥାତ୍ ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀଠାରୁ ଯେଉଁ ଗାଙ୍ଗେୟ ରାଜବଂଶ ଖେମୁଣ୍ଡି ମଣ୍ଡଳର ଅଧୀଶ୍ୱର ହୋଇଥିଲେ, ସେହି ରାଜବଂଶର ଏକ ଶାଖା ପାରଳା ଖେମୁଣ୍ଡିରେ ଏବଂ ଅନ୍ୟ ୨ଟି ଶାଖା ବଡଖେମୁଣ୍ଡି ଓ ସାନ ଖେମୁଣ୍ଡିରେ ରହି ଗଞ୍ଜାମର ଦକ୍ଷିଣାଂଶର ସ୍ଥଳ ଓ ମାଳ ଅଞ୍ଚଳରେ ରାଜତ୍ୱ କରୁଥିଲେ ।

ଏହି ପ୍ରବନ୍ଧରେ ପୂର୍ବରୁ ବର୍ଣ୍ଣିତ ବାସୁଦେବଙ୍କର ଅଠର ପୁରୁଷ (କାହାର କାହାର ମତରେ ୨୮ ପୁରୁଷ) ଦକ୍ଷିଣାଞ୍ଚଳରେ ରାଜତ୍ୱ କରି ସେହି ବଂଶୀୟ ଗୋପିନାଥଦେବ ଓ ନାରାୟଣଦେବ [illegible] ପାଟଣାରୁ [illegible] ମାନଙ୍କ ଦ୍ୱାରା ବିତାଡ଼ିତ ହୋଇ ସମ୍ଭବତଃ ୧୩୮୩ ଶକାବ୍ଦ ଅର୍ଥାତ୍ ୧୪୬୧ ଖ୍ରୀଷ୍ଟାବ୍ଦରେ ଗଞ୍ଜାମର ଖେମୁଣ୍ଡି ରାଜ୍ୟକୁ ଆସି ୧୪ ବର୍ଷ କାଳ ଗୁଡାରି କଟକରେ (ବିଶାଖାପାଟଣା ଜିଲ୍ଲାନ୍ତର୍ଗତ ବର୍ତ୍ତମାନ କୋରାପୁଟ ଜିଲ୍ଲାନ୍ତର୍ଗତ ଗୁଣୁପୁର ତାଲୁକା ନିକଟବର୍ତ୍ତୀ) ରହି ରାଜତ୍ୱ କରୁଥିଲେ । ଗୋପୀନାଥ ଦେବଙ୍କ ମୃତ୍ୟୁପରେ ସମଗ୍ର ଖେମୁଣ୍ଡି ରାଜ୍ୟ ଦୁଇଭାଗ ହୋଇଥିଲା । ପାରଳା ଖେମୁଣ୍ଡିରେ ନାରାୟଣ ଦେବ ଏବଂ ବଡଖେମୁଣ୍ଡିରେ ଗୋପୀନାଥ ଦେବଙ୍କ ଜ୍ୟେଷ୍ଠପୁତ୍ର ସୋମକଳଙ୍କଭାନୁ ବା ସ୍ୱର୍ଣ୍ଣଭାନୁ ଦେବ ରାଜା ହୋଇଥିଲେ । ପାରଳା ଖେମୁଣ୍ଡିରେ ନାରାୟଣ ଦେବ କିଛି ବର୍ଷ ରାଜତ୍ୱ କଲାପରେ ତାହାଙ୍କ ଜ୍ୟେଷ୍ଠପୁତ୍ର ଆନନ୍ଦ ଗଜପତି ନାରାୟଣଦେବ ରାଜା ହୋଇ ରାଜ୍ୟଶାସନ କଲେ ।

ପାରଳାଖେମୁଣ୍ଡି ରାଜବଂଶାବଳୀ ଅନୁସାରେ 'କପିଳଦେବ'

ପାରଳାର ଆଦ୍ୟ ରାଜା । ଗାଙ୍ଗେୟ ବଂଶାବଳୀ ଅନୁସାରେ କଳାହମିର / କଳାମ୍ବିର ପାରଳାର ଆଦ୍ୟ ରାଜା ଏବଂ ବଡ଼ଖେମୁଣ୍ଡି ରାଜବଂଶା ବଳୀ ଅନୁସାରେ 'ନାରାୟଣ ଦେବ' ପାରଳାର ଆଦ୍ୟ (ପ୍ରଥମ) ରାଜା । କାରଣ ନାରାୟଣ ଦେବ ପାରଳାର ଆଦ୍ୟରାଜା ବୋଲି କୁହାଯାଉଥିବାରୁ ବୋଧହୁଏ ତାହାଙ୍କ ବଂଶଧରମାନେ ନାରାୟଣ ଦେବଙ୍କ ନାମ ନିଜ ନିଜର ଉପାଧି ରୂପେ ବ୍ୟବହାର କରୁଥିଲେ । ନାରାୟଣ ଦେବ ଉପାଧି ସହ ଗଜପତି ଉପାଧି ସଂଯୋଜିତ କରି "ଗଜପତି ନାରାୟଣ ଦେବ" ଆଖ୍ୟା ଧାରଣ କରୁଥିଲେ । ଶେଷୋକ୍ତ ମତଟି ବିଶେଷ ଗ୍ରହଣ ଯୋଗ୍ୟ ।

ଏହି ପାରଳାଖେମୁଣ୍ଡିର ନାମକରଣ ସମ୍ପର୍କରେ କିମ୍ବଦନ୍ତୀ ଅଛି ଯେ ପୂର୍ବେ ପ୍ରବାଳାକ୍ଷ ନାମରେ ଜଣେ ରାକ୍ଷସ ରାଜା ବାସ କରୁଥିଲେ । ତାହାର ଇଷ୍ଟଦେବତା ଥିଲେ ମହାଦେବ ମଧୁକେଶ୍ୱର । ପର୍ବତ ଉପରେ ପ୍ରବାଳାକ୍ଷ ରାକ୍ଷସର ରାଜଧାନୀ ଥିଲା ଏବଂ ପର୍ବତର ମୁଣ୍ଡି ଉପରେ ଥିଲା ତାହାର ଦୁର୍ଗ । ପାରଳାର ଚମ୍ପାଗିରି ଥିଲା ତାର ଗଡ଼ । ନରସିଂହ ଦେବ ବା ନାରାୟଣ ଦେବ ବା କଳାହମିର ଏଠାକୁ ଆସିଲା ବେଳେ ପ୍ରବାଳାକ୍ଷ ବା ପ୍ରବାଳ ଖେମୁଣ୍ଡି ଅନାର୍ଯ୍ୟ ରାଜାଙ୍କୁ ହତ୍ୟାକରି କିମ୍ବା ତାହାକୁ କବଳିତ କରି ନାରାୟଣ ଦେବ ବା କଳାହମିର ଏଠାରେ ରାଜା ହୋଇଥିଲେ । ସେହି ପ୍ରବାଳାକ୍ଷ ବା ପ୍ରବାଳ ଖେମୁଣ୍ଡି ନାମରୁ ଏହି ସ୍ଥାନର ନାମ ହୋଇଛି ପାରଳା ଖେମୁଣ୍ଡି । ପ୍ରବାଳ ପରି ଯାହାଙ୍କର ଆଖି ଓ ମୁଣ୍ଡ ତେଜୀୟାନ (?) । ସୁତରାଂ ପ୍ରବାଳ ଖେମୁଣ୍ଡିରୁ ହୋଇଛି ପାରଳାଖେମୁଣ୍ଡି । କିମ୍ବା ଖେମୁଣ୍ଡି ରାଜ୍ୟ ସ୍ଥାପନ ପରେ ପରେ ଏହି ରାଜ୍ୟଟି ବିଭାଜିତ ହୋଇଯିବାରୁ ଏପାରଖେମୁଣ୍ଡି ବା ସେପାର ଖେମୁଣ୍ଡି ଅଥବା ଓପାରଖେମୁଣ୍ଡି ନଚେତ୍ ପାର୍ଶ୍ୱ ବର୍ତ୍ତୀ ଖେମୁଣ୍ଡି ଏହିଭଳି ଭାବରେ କିଛିଦିନ ଗତକରି କାଳକ୍ରମେ ଉଚ୍ଚାରଣରେ ପରିବର୍ତ୍ତନ ଓ ଅପଭ୍ରଂଶ ହୋଇ ପାରଳାଖେମୁଣ୍ଡି ନାମ ବହନ କରିଥିବା ସମ୍ଭବପର ।

ଏହି ଗଙ୍ଗବଂଶୀ ରାଜାମାନେ ପ୍ରଥମେ ଗୁଡ଼ାରିକଟକରେ, ତାପରେ ନଗରୀକଟକ ମୁଖଲିଙ୍ଗଠାରେ ଓ ପରବର୍ତ୍ତୀ ସମୟରେ ପୁରୁଣାପାଟଣାଠାରେ ପାରଳାଖେମୁଣ୍ଡିର ରାଜଧାନୀ ସ୍ଥାପନ କରି ରହିଲେ । ଏହି ପୁରୁଣାପାଟଣାରେ ମରହଟ୍ଟା, ଜାଠ ଓ ପିଣ୍ଡାରୀ ଆଦି ଶତ୍ରୁମାନଙ୍କ କବଳରୁ ରାଜଧାନୀକୁ ରକ୍ଷାକରିବା ନିରାପଦ ନହେବାରୁ ସ୍ଥାନାନ୍ତରିତ ହେଲା ଚମ୍ପାଗିରି (ବୋୟାପାହାଡ଼) ଓ ମହେନ୍ଦ୍ରତନୟା ନଦୀ ଦ୍ୱାରା ସୁରକ୍ଷିତ ଅଞ୍ଚଳ ପାରଳାଖେମୁଣ୍ଡିକୁ ବର୍ତ୍ତମାନ ପାରଳା ରେଲଷ୍ଟେସନ ନିକଟରେ ଥିବା ଏହି ଗଡ଼କୁ । ରକ୍ଷା କରିବା ପାଇଁ ଚମ୍ପାଗିରି ଉପରୁ ଶତ୍ରୁର ଗତିବିଧି ଲକ୍ଷ୍ୟ କରିବା ଓ ମତ୍ସ୍ୟକଣ୍ଠାଠାରୁ ବାଦ୍ୟଦ୍ୱାରା ସତର୍କ କରାଇବା ସୁବିଧାଜନକ ହୋଇଥିଲା । ଏହି ଚମ୍ପାଗିରିରେ ମତ୍ସ୍ୟକଣ୍ଠା ନିର୍ମିତ ଗୋଟିଏ ମଣ୍ଡପ ଥିଲା । ତାହା ମାଛର ଅସ୍ଥି ଉପରେ ସୂକ୍ଷ୍ମ ଶିଳ୍ପ ଖୋଦିତ ହୋଇଥିଲା । ଏହି ମଣ୍ଡପଟି ଆଉ ନାହିଁ । ବହୁକାଳରୁ ଲୀନ ହୋଇଗଲଣି । ଏହିଭଳି ପ୍ରାଚୀନ ଐତିହ୍ୟ ଓ ପରଂପରା ସମ୍ପନ୍ନ ପାରଳାନଗରୀ ବହିଃଶତ୍ରୁମାନଙ୍କ ଆକ୍ରମଣରୁ ନିଜକୁ ରକ୍ଷାକରି ନିଜର ସ୍ୱାତନ୍ତ୍ର୍ୟତା ବଜାୟ ରଖି ପାରିଛି । ଖେମୁଣ୍ଡି ଗଙ୍ଗବଂଶୀ ଗଜପତି ରାଜାମାନେ ଏଠାରେ ଏକ ସ୍ୱତନ୍ତ୍ର ରାଜବଂଶ ପ୍ରତିଷ୍ଠାକରି ଓଡ଼ିଶା ଇତିହାସରେ ଏକ ସ୍ୱତନ୍ତ୍ର ଆସନଲାଭ କରି ପାରିଛନ୍ତି । ଗୁଡ଼ାରିକଟକ, ମୁଖଲିଙ୍ଗ, କଳିଙ୍ଗପାଟଣା (କଳିଙ୍ଗର ରାଜଧାନୀ), ପୁରୁଣାପାଟଣା ଓ ପାରଳାଖେମୁଣ୍ଡିରେ ଏମାନେ ନିଜନିଜର ରାଜଧାନୀ ସ୍ଥାପନକରି ପ୍ରାଚୀନ ଇତିହାସ, ସଂସ୍କୃତି ଓ ପରଂପରାର ସୁରକ୍ଷା ଓ ପ୍ରଗତି କରିଛନ୍ତି ।

## ନାରାୟଣ ଦେବ :

ଗଙ୍ଗବଂଶୀ ପ୍ରଥମ ରାଜା ନାରାୟଣଦେବ ବା କଳାହମିର ଗୁଡ଼ାରିଗଡ଼ରେ ରାଜଧାନୀ କରି ଖେମୁଣ୍ଡି ରାଜ୍ୟକୁ ଶାସନ କଲେ । ଷୋଳ ତାଲୁକା ବସାଇଲେ । ସେତେବେଳେ ଏହିଖେମୁଣ୍ଡି ରାଜ୍ୟ ଉତ୍ତରରେ ଚିଲିକାଠାରୁ ଦକ୍ଷିଣରେ ଜୟପୁର (ନନ୍ଦପୁର) ରାଜ୍ୟ ପର୍ଯ୍ୟନ୍ତ ଏବଂ ପୂର୍ବରେ ଗଞ୍ଜାମଠାରୁ ପଶ୍ଚିମରେ ବସ୍ତର, କଳାହାଣ୍ଡି ଓ ସୋନପୁର ତଥା କେନ୍ଦୁଝରର କିଛିଅଂଶକୁ ନେଇ ସେତେବେଳେ ଗଢ଼ି ଉଠିଥିଲା । ଏହାଙ୍କ ରାଣୀ ଥିଲେ ଚାଲୁକ୍ୟବଂଶର ବାହୁବଳେନ୍ଦ୍ର ମଲକଣୁରାଜାଙ୍କ କନ୍ୟା ଲକ୍ଷ୍ମୀପ୍ରିୟା । ଦୁର୍ଗା ଓ ମାଣିକେଶ୍ୱରୀଙ୍କୁ ଇଷ୍ଟଦେବୀ ଭାବରେ ପୂଜାଆରାଧନା କରୁଥିଲେ । ଏହି ରାଜା ଗୁଡ଼ାରିରେ ନୀଳକଣ୍ଠେଶ୍ୱର ମନ୍ଦିର ନିର୍ମାଣ କରିଥିଲେ । ଗୁଡ଼ାରି ନିକଟବର୍ତ୍ତୀ ପଦ୍ମପୁରର ଜଗମୁଣ୍ଡା ପାହାଡ଼ରେ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀର ବୌଦ୍ଧ କୀର୍ତ୍ତି ମନ୍ଦିର ଗାତ୍ରରେ ଦେଖିବାକୁ ମିଳେ । ଏଥିରେ ଚନ୍ଦ୍ରଲେଖା ଧର୍ମକୀର୍ତ୍ତି ବୋଲି ଉଲ୍ଲେଖ ଅଛି ।

## ମଦନ ରୁଦ୍ରଦେବ :

ଚାଲୁକ୍ୟ ବଂଶର ବାହୁବଳେନ୍ଦ୍ରଙ୍କ କନ୍ୟା ଲକ୍ଷ୍ମୀଦେବୀ ଥିଲେ ମଦନରୁଦ୍ରଙ୍କ ରାଣୀ । ଏହି ରାଜାଙ୍କ ଜ୍ୟେଷ୍ଠପୁତ୍ର ଯୁବାବସ୍ଥାରେ ମୃତ୍ୟୁବରଣ କରିଥିଲେ । ପଦ୍ମଭାନୁ ଓ ସର୍ବଙ୍କ ନାମରେ ସେ ପରିଚିତ ଥିଲେ ।

ନାରାୟଣ ରୁଦ୍ରଦେବଙ୍କ ରାଣୀ ଥିଲେ ଚାଳୁକ୍ୟ ବଂଶର କୃପାମିତ୍ରଙ୍କ କନ୍ୟା ପାର୍ବତୀପ୍ରିୟା ଏବଂ ଅନନ୍ତରୁଦ୍ରଦେବଙ୍କ ରାଣୀ ହୋଇଥିଲେ ବଉଦର ଗଦାଧର ଲାଲଙ୍କ କନ୍ୟା ରତ୍ନମଣି । ଅନନ୍ତରୁଦ୍ରଦେବ ଏବଂ କର୍ପୂରରୁଦ୍ରଦେବଙ୍କ ପରେ ଲକ୍ଷ୍ମୀ ନୃସିଂହଭାନୁଦେବ ଗଙ୍ଗବଂଶରେ ରାଜା ହୋଇଥିଲେ । ଶୂରସିଂହଲାଲଙ୍କ କନ୍ୟାଙ୍କୁ ବିବାହ କରିବା ପରେ ଅତି ନିଷ୍ଠାର ସହ ରାଜ୍ୟ ପାଳନ କଲେ । ଏହାଙ୍କ ସମୟରେ ପାରଳାଖେମୁଣ୍ଡି ରାଜ୍ୟର ବହୁବିଧ ଉନ୍ନତି ହୋଇଥିଲା ।

ମଧୁକର୍ଣ୍ଣ ଭାନୁଦେବ (ଲିଂଗଭାନୁଦେବ) ବାହୁବଳେନ୍ଦ୍ରଙ୍କ କନ୍ୟା ଅନ୍ନପୂର୍ଣ୍ଣାଙ୍କୁ ବିବାହ କରିଥିଲେ । ବଂଶଧାରା ନଦୀକୂଳସ୍ଥ ମୁଖଲିଂଗ ଠାରେ ନିର୍ମିତ ହୋଇଥିବା ମଧୁକେଶ୍ୱର ଶିବଙ୍କର ମନ୍ଦିର ମରାମତି କରି କେତେକ ଅଗ୍ରହାର ଦାନ କରିଥିଲେ । ସେ ଜଣେ ଏକନିଷ୍ଠ ଶିବଭକ୍ତ ହୋଇଥିବାରୁ ଲିଙ୍ଗ ଭାନୁଦେବ ନାମ ଧାରଣ କରିଥିଲେ । ଏହାଙ୍କ ସମୟରେ ପାରଳାଖେମୁଣ୍ଡିର ରାଜଧାନୀ ଗୁଡାରିକଟକରୁ ମୁଖଲିଂଗକୁ ସ୍ଥାନାନ୍ତରିତ ହୋଇଥିଲା ।

ମୃତ୍ୟୁଞ୍ଜୟ ଭାନୁଦେବ ଝାନ୍ତପତ୍ରାର ସଦାଶିବଲାଲଙ୍କ କନ୍ୟା ହୀରାବତୀଙ୍କୁ ବିବାହକରି ବହୁବର୍ଷ ରାଜ୍ୟ ଶାସନ କରିଥିଲେ । ତାପରେ ବାହୁବଳେନ୍ଦ୍ର ନରହରି ରାୟଙ୍କ କନ୍ୟା ଲାଲିବତୀଙ୍କ ସହିତ ମଦନମୋହନ ଭାନୁଦେବ (ମାଧବସୁନ୍ଦର ଭାନୁଦେବ)ଙ୍କର ବିବାହ ଓ ରାଜ୍ୟ ଲାଭ ହୋଇଥିଲା । ଯାଜପୁରର ମାନସିଂହଲାଲଙ୍କ କନ୍ୟା ଲୀଳାବତୀ ଥିଲେ ଚନ୍ଦ୍ରବେତାଳ ଭାନୁଦେବଙ୍କର ରାଣୀ । ସେ ମଧ୍ୟ ମଦନମୋହନଙ୍କ ପରି ବହୁବର୍ଷ ରାଜତ୍ୱ କରିଥିଲେ ।

ସ୍ୱର୍ଣ୍ଣଲିଂଗଙ୍କ ମାତୁଳକନ୍ୟା ପାଟମହାଦେବୀଙ୍କ ଗର୍ଭରୁ ଜନ୍ମ ହୋଇଥିଲେ ଦୁଇପୁତ୍ର-ଶିବଲିଂଗ ଓ ଅନଂଗଭୀମକେଶରୀ । ଶିବଲିଂଗ ବା ସ୍ୱର୍ଣ୍ଣଲିଂଗ ପାରଳାଖେମୁଣ୍ଡିର ରାଜା ଏବେ ଅନଂଗଭୀମକେଶରୀ ଥିଲେ ବଡ଼ଖେମୁଣ୍ଡି ରାଜା । ସେତେବେଳେ ପାରଳାଖେମୁଣ୍ଡି ରାଜ୍ୟର ଦକ୍ଷିଣରେ ଶ୍ରୀକାକୁଲମ୍ ସ୍ଥିତ ନଗରକଟକ ଓ ଗୁଣ୍ଡୁପୁର ତାଲୁକାର ଗୁଡ଼ାରିକଟକ ସହିତ ଯୋଗସୂତ୍ର ଥିଲା । ଢେଙ୍କାନାଳ ରାଧାକାନ୍ତ ମନ୍ଦିରରେ ସ୍ୱର୍ଣ୍ଣଲିଂଗ ଭାନୁଙ୍କର ଏକ ଶିଳାଲେଖ ରହିଛି । ବଙ୍ଗଦେଶ ବିଷ୍ଣୁପୁରର କୃପାସିନ୍ଧୁଲାଲଙ୍କ କନ୍ୟା ରୂପମଞ୍ଜରୀଙ୍କୁ ଭୀମକେଶରୀ ଦେବ ବିବାହ କରିଥିଲେ । ଏହି ଶିବଲିଂଗ ଭାନୁଦେବ (ସ୍ୱର୍ଣ୍ଣଲିଂଗଭାନୁଦେବ)ଙ୍କ ସମୟରେ ଖେମୁଣ୍ଡି ରାଜ୍ୟ ଭାଗଭାଗ ହୋଇଥିଲା ବୋଲି ଗଂଗ ବଂଶାବଳୀରୁ ଜଣାଯାଏ ।

ତାପରେ ଶିବଲିଙ୍ଗ ଗଜପତି (ରାଣୀ ଚନ୍ଦ୍ରରେଖା) ଓ ସ୍ୱର୍ଣ୍ଣକେଶରୀ ଗଜପତି ପାରଳାଖେମୁଣ୍ଡିର ରାଜାହେଲେ । ମୁକୁନ୍ଦରୁଦ୍ର ଗଜପତି ୨୭ ବର୍ଷ ରାଜତ୍ୱକରି ପୁରୁଣାପାଟଣାରେ ରାଜଧାନୀ କରି ରହିଲେ । ସେ ନିଜ ମାତୁଳଙ୍କ କନ୍ୟାଙ୍କୁ ବିବାହ କରିଥିଲେ । ଏହାଙ୍କ ସମୟରେ ମୁଖଲିଙ୍ଗରୁ ରାଜଧାନୀ ଉଠିଆସିଲା ପୁରୁଣାପାଟଣାକୁ । ମୁଖଲିଙ୍ଗ ତାପରେ କେବଳ ପ୍ରସିଦ୍ଧ ଶୈବକ୍ଷେତ୍ର ଭାବରେ ପରିଚିତ ହୋଇଥିଲା ।

ମୁକୁନ୍ଦ ଗଜପତି ନାରାୟଣ ଦେବଙ୍କ ସମୟରେ ମୁଖଲିଙ୍ଗ ନିକଟସ୍ଥ ନଗରୀକଟକରୁ ପୁରୁଣାପାଟଣାକୁ ସଦର ମହକୁମା ଉଠିଆସିଥିଲା । ଫଳରେ ମହେନ୍ଦ୍ର ତନୟା ନଦୀ କୂଳରେ ରାଜା ମୁକୁନ୍ଦ ଗଜପତି ପ୍ରସିଦ୍ଧ ଶୈବକ୍ଷେତ୍ର ରୂପେ ପରିଚିତ କରାଇବା ପାଇଁ ନିର୍ମାଣ କରିଥିଲେ ମଲିକେଶ୍ୱର ମନ୍ଦିର । ଏହାଙ୍କ ସମୟରେ ମଧ୍ୟ ସୀମାଞ୍ଚଳ ଏବଂ ଶ୍ରୀକୂର୍ମ ବିଜୟ ନଗର ରାଜାଙ୍କ ଅଧୀନକୁ ଚାଲିଗଲା । ବଂଶଧାରା ନଦୀର ଦକ୍ଷିଣାଞ୍ଚଳ ବିଜୟନଗର ରାଜ୍ୟର ଅନ୍ତର୍ଭୁକ୍ତ ହେଲା । ବଂଶଧାରା ନଦୀ ଥିଲା ପାରଳାଖେମୁଣ୍ଡି ଓ ବିଜୟନଗର ଉଭୟ ରାଜ୍ୟର ସୀମା ।

ତାପରେ ଅନନ୍ତ ପଦ୍ମନାଭଦେବ(ଅନନ୍ତ ପଶୁରାମଦେବ) ରାଜା ହେଲେ । ଏହାଙ୍କୁ କେହି କେହି କେବଳ ପଦ୍ମନାଭ ନାରାୟଣ ଦେବ ବୋଲି କହୁଥିଲେ । ନରସିଂହ ଦେବଙ୍କ କନ୍ୟାଙ୍କୁ ବିବାହ କରି ବହୁ ବର୍ଷ ସେ ରାଜ୍ୟଶାସନ କରିଥିଲେ ।

ସର୍ବଜ୍ଞ ଜଗନ୍ନାଥ ନାରାୟଣ ଦେବ (୧ମ) ଖ୍ରୀ:ଅ ୧୬୮୬ରୁ ୧୭୦୨ ପର୍ଯ୍ୟନ୍ତ ୧୬ ବର୍ଷ ରାଜତ୍ୱ କରିଥିଲେ । ମାତୁଳଙ୍କ କନ୍ୟା ପାଟରାଣୀଙ୍କୁ ବିବାହ କରିଥିଲେ । ପ୍ରଥମରାଣୀଙ୍କ ଗର୍ଭରୁ ଅଠରପୁତ୍ର ଓ ଦ୍ୱିତୀୟ ରାଣୀଙ୍କ ଗର୍ଭରୁ ଜଣେ ପୁତ୍ର ମୋଟ୍ ୧୯ ଗୋଟି ପୁତ୍ରର ଜନକ ଥିଲେ ଜଗନ୍ନାଥ ନାରାୟଣ ଦେବ । ଏହାଙ୍କ ଜ୍ୟେଷ୍ଠପୁତ୍ର ଥିଲେ ବୀରସିଂହ ଦେବ ଓ କନିଷ୍ଠପୁତ୍ର ଥିଲେ ନରହରି ଦେବ । ଏହି ଅଠରପୁତ୍ର ରଜାହୋଇ ଶ୍ରୀକାକୁଲମ୍‌ରେ ଥିଲେ । କୁହାଯାଏ ନବାବ୍ ମୁଲ୍ଲା ସାହେବ ଅଠରପୁତ୍ରଙ୍କସହିତ ରାଜା ସର୍ବଜ୍ଞ ଜଗନ୍ନାଥ ନାରାୟଣ ଦେବଙ୍କୁ ଶ୍ରୀକାକୋଲ (ବର୍ତ୍ତମାନର ନାମ ଶ୍ରୀକାକୁଲମ୍) ଠାରେ ବନ୍ଦୀକରି ରଖିଲେ । ଶେଷରେ ହାଇଦ୍ରାବାଦର ଏହି ନବାବ ମୁସଲମାନ ସେନାଙ୍କ ସହିତ ଯୁଦ୍ଧରେ ଜୟଲାଭ କରି ନିଜର ହାତୀ ଦ୍ୱାରା ଅତି ନିର୍ଦ୍ଦୟ ଭାବରେ ଜଗନ୍ନାଥ ନାରାୟଣ ଦେବଙ୍କୁ ନିହତ କଲେ । ପିତାଙ୍କର ଏଭଳି ମୃତ୍ୟୁ ଦେଖି ଜ୍ୟେଷ୍ଠପୁତ୍ର ବୀରସିଂହ ଦେବ ହାତୀକୁ ଧରିବା ପାଇଁ ଚେଷ୍ଟାକରି ବିଫଳ ହେଲେ ଏବଂ ସେ ମଧ୍ୟ ସେଥିରେ ପ୍ରାଣତ୍ୟାଗ କଲେ । ବନ୍ଦୀ ହୋଇଥିବା ଅବସ୍ଥାରେ ଏହି ରାଜାଙ୍କ ସର୍ବକନିଷ୍ଠ ପୁତ୍ର ଦ୍ୱିତୀୟରାଣୀ ଗର୍ଭସମ୍ଭୂତ ନରହରି

ଦେଓ ପିତା ଓ ଭାଇମାନଙ୍କ ଅନୁମତି କ୍ରମେ ପାରଳା ରାଜଗାଦିରେ ବସିଲେ ।

୧୬୮୭ରେ ଗୋଲକୁଣ୍ଡା ରାଜ୍ୟର ପତନ ହେବାରୁ ଏହା ଦିଲ୍ଲୀ ବାଦଶାହୀ ଆଉରଙ୍ଗଜେବଙ୍କ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହେଲା ସେହି ଦିନଠାରୁ ଏହି ରାଜ୍ୟ ଦାକ୍ଷିଣାତ୍ୟର ସୁବାଦାରଙ୍କ ଶାସନାଧୀନ ହେଲା । ସୁବାଦାରଙ୍କ ଅଧୀନରେ ଥିବା ସିକାକୋଲର ମୁସଲମାନ ଫୌଜଦାର ୧୬୯୬, ୧୬୯୭ ଓ ୧୬୯୮ରେ ବାରମ୍ବାର ନନ୍ଦପୁର ରାଜ୍ୟ ଆକ୍ରମଣ କରି ପ୍ରତ୍ୟେକ ଥର ପରାସ୍ତ ହୋଇଥିଲେ । ଦ୍ୱିଲ୍ଲୀଅଧିଶ୍ୱର ଯବନରାଜ ସେନାପତି ମଲ୍ଲିକ ଅଶ୍ୱ ବିକ୍ରେତା ରୂପେ ବହୁ ଅଶ୍ୱ ସହିତ ଖେମୁଣ୍ଡି ରାଜ୍ୟରେ ପ୍ରବେଶ କଲେ । ରାଜା ପଦ୍ମନାଭ ଦେବ ତାଙ୍କୁ ଅନିଷ୍ଟକାରୀ ଧୂମକେତୁ ଭଳି ମନେକରି ପ୍ରଥମେ ତାଙ୍କ ସହିତ କପଟମୈତ୍ରୀ ସ୍ଥାପନ କରିଥିଲେ । କିଛିଦିନ ପରେ ଏହି ମୁସଲମାନ ସେନାପତିଙ୍କୁ ଦୁର୍ଗମ ପଥରେ ବିଦାୟ ଦେଇଥିଲେ । ସେ ବାଟରେ ଯାଉ ଯାଉ ନନ୍ଦପୁରଠାରେ ଅସଂଖ୍ୟ ପାର୍ବତୀୟ ସୈନ୍ୟଙ୍କ ଦ୍ୱାରା ନିହତ ହୋଇଥିଲେ ।

## ନର ହରି ଦେଓ

ଏହି ରାଜା ବାହୁବଳେନ୍ଦ୍ର ଚନ୍ଦ୍ରରାୟଙ୍କ କନ୍ୟାଙ୍କୁ ବିବାହ କରିଥିଲେ । ସେ ଅବଶିଷ୍ଟ ବନ୍ଦୀହୋଇ ରହିଥିବା ଭାଇମାନଙ୍କୁ ମୁକୁଳାଇବା ପାଇଁ ଶ୍ରୀକାକୋଳର ନବାବ ମୁଲ୍‌କାଙ୍କ ସହିତ ଯୁଦ୍ଧ କଲେ । ଯୁଦ୍ଧ ସମୟରେ ଅତି ନିର୍ଦ୍ଦୟ ଭାବରେ ବନ୍ଦୀହୋଇ ରହିଥିବା ଭାଇମାନେ ମୃତ୍ୟୁବରଣ କରିବାରୁ ପ୍ରତିହିଂସା ପରାୟଣ ହୋଇ ରାଜା ନରହରିଦେଓ ମୁଲ୍‌କା ସାହେବଙ୍କ ମୁଣ୍ଡ କାଟିଦେଲେ । ଏହି ବିଜୟର ସ୍ମାରକୀ ରୂପେ ଗଜପତି ରାଜତ୍ୱ ପାରଳାଖେମୁଣ୍ଡି ଗଜପତି ରାଜପରିବାର ଚଳାଇ ଆସୁଛନ୍ତି (୧୩) । ଶେଷରେ ରାଜା ମୁଲ୍‌କା ସାହେବଙ୍କ ମୁଣ୍ଡ କାଟିଥିବା ଖଣ୍ଡାର ନାମ ଦେଇଥିଲେ ମୁଲ୍‌କ ମର୍ଦ୍ଦନ ଖଣ୍ଡା । ନବାବଙ୍କ ମୁଣ୍ଡକଟା ଖଣ୍ଡାକୁ ପାରଳାଖେମୁଣ୍ଡିରେ ରାଜଗୁରୁ ପ୍ରତିବର୍ଷ ଦଶହରା ସମୟରେ ପୂଜାକରି ଆସୁଛନ୍ତି । ମୁସଲମାନମାନଙ୍କୁ ନିହତ କରି ସ୍ୱରାଜ୍ୟକୁ ଫେରି ସତେଇଶ ବର୍ଷ ରାଜତ୍ୱ କରିବା ପୂର୍ବକ ପାରଳାରେ ସ୍ଥାୟୀ ରାଜବଂଶ ପ୍ରତିଷ୍ଠାର ପଥକୁ ସୁଗମ କରିଦେଲେ । ରାଜାଙ୍କ ଦୁଇପୁତ୍ର ବୀର ପଦ୍ମନାଭ ଦେବ (ଜ୍ୟେଷ୍ଠ) ଏବଂ ବୀର ପ୍ରତାପରୁଦ୍ରଦେବ (କନିଷ୍ଠ)ଙ୍କ ମଧ୍ୟରୁ ଜ୍ୟେଷ୍ଠପୁତ୍ର ବୀର ପଦ୍ମନାଭଦେବ ୧୯ ଅଙ୍କରେ ୧୬ବର୍ଷ ରାଜତ୍ୱ କଲେ । ଏହି ବୀର ପଦ୍ମନାଭଦେବ ଅପୁତ୍ରିକ ଥିବାରୁ ତାଙ୍କର ସାନଭାଇ ବୀର ପ୍ରତାପରୁଦ୍ର ନାରାୟଣ ଦେବ ପାରଳାର ରାଜା ହେଲେ ।

ବୀର ପ୍ରତାପରୁଦ୍ର ଗଜପତି ନାରାୟଣ ଦେବଙ୍କ ରାଜତ୍ୱ ସମୟରେ ପାରଳାଖେମୁଣ୍ଡି ରାଜ୍ୟର ରାଜଧାନୀ ପୁରୁଣାପାଟଣାରୁ ପାରଳାଖେମୁଣ୍ଡିକୁ ସ୍ଥାନାନ୍ତରିତ ହେଲା । ଏହି ରାଜା ଜଣେ ଶାନ୍ତଶିଷ୍ଟ ଓ ଅମାୟିକ ଥିଲେ । ସେ ଅଠର ବର୍ଷ ରାଜତ୍ୱ କଲେ । ସେ ରାମାନୁଜ ଧର୍ମରେ ଦୀକ୍ଷିତ ହୋଇ ଇଷ୍ଟଦେବୀ ରାମସ୍ୱାମୀଙ୍କ ପ୍ରତିନିଧି ଭାବରେ ରାଜ୍ୟ ଶାସନ କଲେ ଏବଂ ମନ୍ଦିର ନିର୍ମାଣ କରି ରାମସ୍ୱାମୀ ମହାପ୍ରଭୂଙ୍କୁ ପ୍ରତିଷ୍ଠା କରାଇଲେ । ରାଜକାର୍ଯ୍ୟରେ ଓ ନଗରର ଅନ୍ୟାନ୍ୟ ଉତ୍ସବାନୁଷ୍ଠାନରେ ରାମସ୍ୱାମୀଙ୍କୁ ପାଲିଙ୍କି ପଟୁଆରରେ ନିଆଯାଉଥିଲା । ତାଙ୍କର ଏକନିଷ୍ଠ ଭକ୍ତ ଭାବରେ ସେ ପାରଳା ରାଜ୍ୟ ଶାସନ କରୁଥିଲେ । ସେ ବାହୁବଳେନ୍ଦ୍ର ଜଗବନ୍ଧୁ ରାୟଙ୍କ କନ୍ୟାଙ୍କୁ ବିବାହ କରିଥିଲେ । ଏହାଙ୍କ ସମୟରେ ରାମ ସାଗର, ସୀତାସାଗର, ଲକ୍ଷ୍ମଣ ସାଗର ଓ ଭରତ ସାଗର (ବଡସିନ୍ଧିଠାରେ) ଆଦି ଖୋଳାଯାଇ ପ୍ରଜାମାନଙ୍କ ଉପକାର ନିମନ୍ତେ ଜଳସେଚନର ବ୍ୟବସ୍ଥା କରାଯାଇଥିଲା । ଏହି ରାଜା ଅପୁତ୍ରିକ ଥିବାରୁ ତାହାଙ୍କର ଜ୍ଞାତି ବନ୍ଧୁ ରାଜବଂଶର ଯୋଗୀଦେଓଙ୍କର ଦ୍ୱିତୀୟ ସନ୍ତାନ ଜଗନ୍ନାଥ ନାରାୟଣ ଦେବଙ୍କୁ ସେ ଦତ୍ତପୁତ୍ର ବା ଉତ୍ତରାଧିକାରୀ ରୂପେ ମନୋନୀତ କଲେ । ଶେଷରେ ତାଙ୍କ ମୃତ୍ୟୁ ପରେ ତାହାଙ୍କ ଦତ୍ତପୁତ୍ର ଜଗନ୍ନାଥ ନାରାୟଣ ଦେବ ପାରଳାଖେମୁଣ୍ଡିର ରାଜା ହେଲେ ।

ଜଗନ୍ନାଥ ଗଜପତି ନାରାୟଣ ଦେବ (୨ୟ)ଙ୍କ ରାଜତ୍ୱ ସମୟରେ ପାରଳା ଖେମୁଣ୍ଡିର ସୀମା ଖୋର୍ଦ୍ଧାର ଚନ୍ଦ୍ରଗିରି ଗଡ ଛଏଗଡ (ଘାଟି)ଠାରୁ ଦକ୍ଷିଣରେ ସୀମାଞ୍ଚଳ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଏହି ସମୟରେ ଖେମୁଣ୍ଡି ରାଜ୍ୟ ଉପରେ ମୁସଲମାନ ଆକ୍ରମଣ ହୋଇଥିଲା । ସେତେବେଳେ ଶ୍ରୀକାକୋଳରେ ସ୍ଥାୟୀ ବାସିନ୍ଦା ହୋଇ ହାଇଦ୍ରାବାଦ ନିଜାମଙ୍କ ପକ୍ଷରୁ ନବାବ୍ ଜାଫରଲ୍ ଖାଁ ସେନାପତି ଭାବରେ ରାଜତ୍ୱ କରୁଥାନ୍ତି । ତାଙ୍କୁ ଗଞ୍ଜାମର ଶାସନ କର୍ତ୍ତା ଭାବରେ ମଧ୍ୟ ନିଯୁକ୍ତ କରାଯାଇଥିଲା । ନବାବ ଜାଫରଲ୍ ଖେମୁଣ୍ଡି ରାଜ୍ୟକୁ ଆସି ଦେଖିଲେ ଯେ, କୌଣସି ରାଜା ହାଇଦ୍ରାବାଦ ନିଜାମଙ୍କୁ କର ଦେଉନାହାନ୍ତି । ବଡ ଖେମୁଣ୍ଡି ରାଜା ପୁରୁଷୋତ୍ତମ ଦେବ ପ୍ରତିବର୍ଷ ନିୟମିତ ଭାବରେ କର ଦେବାକୁ ଅସ୍ୱୀକାର କରେନ୍ତେ ନବାବ ରାଗିଯାଇ ବାଦରଲଖାଁଙ୍କୁ ଖେମୁଣ୍ଡି ରାଜ୍ୟ ଆକ୍ରମଣ ନିମନ୍ତେ ପଠାଇଲେ । ବଡଖେମୁଣ୍ଡି ରାଜ୍ୟର ଆଡ଼ପଡା ଦୁର୍ଗରେ ଭୀଷଣ ଯୁଦ୍ଧହେଲା । ବାଦରଲଙ୍କ ସୈନ୍ୟମାନେ ୧୪୦ ଜଣ ପାଇକବୀରଙ୍କ ମୁଣ୍ଡକାଟି ଇଛାପୁରରେ ନବାବଙ୍କ ସମ୍ମୁଖରେ ଦେଖାଇ ଦେବାରୁ ରାଜା ପୁରୁଷୋତ୍ତମ ଦେବ ଭୟ ପାଇ ଆଉ ବିବାଦ ନକରି ବାର୍ଷିକ ପଚିଶ ହଜାର ଟଙ୍କା ହାଇଦ୍ରାବାଦ ନିଜାମଙ୍କୁ କର ଦେବାପାଇଁ ସମ୍ମତ ହେଲେ । ଏହାପରେ ନବାବ ଜାଫରଲ୍ ଆଠଗଡ଼, ଚିକିଟି, ବଡ଼ଗଡ ଓ ମହୁରୀ ଆଦି ଦେଶୀୟ-ରାଜାମାନଙ୍କ ରାଜସ୍ୱ ବାକିଥିବାରୁ ସେମାନଙ୍କୁ ଧରିଆଣି ଶ୍ରୀକାକୋଳରେ ବନ୍ଦୀକରି ରଖିଲେ ।

ପାରଳାଖେମୁଣ୍ଡିର ଦ୍ୱିତୀୟ ଜଗନ୍ନାଥ ନାରାୟଣ ଦେବ ଏହି ଦୁଃସମ୍ବାଦ ପାଇ ବହୁ ସୈନ୍ୟସାମନ୍ତ ସହ ନବାବ ଜାଫର୍ ଅଲ୍ଲୀଙ୍କୁ ଆକ୍ରମଣ କଲେ ଏବଂ ନବାବଙ୍କ ସୈନ୍ୟମାନଙ୍କୁ ପରାସ୍ତକରି ଚୁରିଜଣ ଦେଶୀୟ ରାଜାଙ୍କୁ କାରାମୁକ୍ତ କରିବା ସହିତ ବଂଶଧାରା ନଦୀରେ ତାହାଙ୍କ ମୂଲକ ମର୍ଦ୍ଦନ ଖଣ୍ଡାକୁ ଧୋଇଦେଲେ । ନବାବ ଜାଫର୍ ଅଲ୍ଲୀଙ୍କୁ ପରାସ୍ତକରି ତଡ଼ିଦେବା ଫଳରେ ଜଗନ୍ନାଥ ନାରାୟଣ ଦେବ ଗଞ୍ଜାମର ଦେଶୀୟ ରାଜାମାନଙ୍କୁ ନିଜର ଅଧୀନସ୍ଥ କରିଦେଲେ । ଏହି ସମୟରେ ବଡ଼ଖେମୁଣ୍ଡି ରାଜ୍ୟ ଉପରେ ଆକ୍ରମଣ ଚଳାଇ ତାହାଙ୍କ ରାଜଧାନୀ ବିଜେନଗର ଦୁର୍ଗର ଦ୍ୱାରଦେଶ ପର୍ଯ୍ୟନ୍ତ ଯାଇ ସେଠାରେ ଗୋଟିଏ ଶିବିର କରି ଅନେକ ଦିନ ପର୍ଯ୍ୟନ୍ତ ରହିଲେ । ପାରଳାର ଏହି ସୌଭାଗ୍ୟ ଅଧିକ କାଳ ରହିପାରିଲନାହିଁ । କାରଣ ଏଣେ ହାଇଦ୍ରାବାଦ ନିଜାମ ଉଲ୍‌ମୁଲ୍‌କୁ ଗଞ୍ଜାମରେ ନିଜର ଅଧିକାର ବହୁ ସମୟରେ ନ୍ୟସ୍ତ କରି ପାରୁ ନ ଥିବାରୁ ଫରାସୀ ସିପାହୀମାନଙ୍କର ଭରଣ ପୋଷଣ ନିମନ୍ତେ ଫରାସୀ ସରକାରଙ୍କୁ ପ୍ରଦାନ କଲେ । ଫରାସୀ ବୀର ମୁସୋବୁସି କେତେକ ସୈନ୍ୟ ସହ ଗଞ୍ଜାମକୁ ଆସି ବହୁ ଅଞ୍ଚଳ ଅଧିକାର କରିଥିଲେ ଏବଂ ଗଞ୍ଜାମର ଶାସନ ଭାର ଦାକ୍ଷିଣାତ୍ୟର ବିଜୟ ନଗର ରାଜାଙ୍କୁ ଅର୍ପଣ କରି ସେ ପଳାଇଗଲେ । ବିଜୟ ନଗର ରାଜା ଫରାସୀ ବୀର ମୁସୋବୁସିଙ୍କ ସହାୟତାରେ ଗଞ୍ଜାମ ଜିଲ୍ଲାର ଶାସନ ଭାର ପାଇ ନିଜ ପକ୍ଷରୁ ଗଞ୍ଜାମ ଜିଲ୍ଲାର ଶାସନକର୍ତ୍ତା ରୂପେ ସେନାପତି ବିରାମ ବେଗମ ସାହିଙ୍କୁ ପଠାଇଥିଲେ । ସେତେବେଳେ ଗଞ୍ଜାମର ହୁଲ ଓ ମାଳ ଅଞ୍ଚଳରେ ପାଇକ ସୈନ୍ୟମାନଙ୍କ ଦୁର୍ଦ୍ଧର୍ଷ ପରାକ୍ରମ ହେତୁ ଅନ୍ୟାନ୍ୟ ଜମିଦାର ମାନେ ରାଜା ଜଗନ୍ନାଥ ନାରାୟଣ ଦେବଙ୍କ ଆନୁଗତ୍ୟ ସ୍ୱୀକାର କରୁଥିଲେ । ବଂଶ ମର୍ଯ୍ୟାଦା ତାଙ୍କୁ ଉଚ୍ଚ ଆସନରେ ଅଧିଷ୍ଠିତ କରି ପାରିଥିଲା । ଦିନେ ସେ ମନରେ ବିଚାରିଲେ ଯେ ନୀଳାଚଳରେ ତାହାଙ୍କ ପୂର୍ବ ପୁରୁଷଙ୍କ ପ୍ରତିଷ୍ଠିତ ଶ୍ରୀମନ୍ଦିର ଭୋଇବଂଶୀୟ ଖୋର୍ଦ୍ଧାର ଠାକୁର ରାଜା ବୀରକିଶୋର ଦେବଙ୍କ ହାତରେ ଅତି ଦୈନ୍ୟ ହୋଇ ପଡ଼ିଛି । କାରଣ ନିଜେ ଠାକୁର ରାଜା ଉତ୍କଳର ଶାସନ କର୍ତ୍ତା ମରହଟ୍ଟା ସୁବେଦାରଙ୍କ କ୍ରୀଡ଼ନକ ରୂପେ ପରିଗଣିତ ହୋଇଛନ୍ତି । ପୂର୍ବ ଗଜପତି ବଂଶର ସଂସ୍କୃତି ଓ ଧର୍ମ ବୈଦେଶିକ ରାଜାମାନଙ୍କ ପ୍ରଭାବରେ ଲୋପ ହୋଇ ଯାଉଛି । ତାହାର ପୁନରୁଦ୍ଧାର ପାଇଁ ଜାତୀୟ ଏକତା ଆବଶ୍ୟକ । ଏହି ଉଦ୍ଦେଶ୍ୟରେ ରାଜା ଜଗନ୍ନାଥ ନାରାୟଣ ଦେବ ଗଞ୍ଜାମର ଅନ୍ୟାନ୍ୟ ରାଜା ଓ ଜମିଦାରମାନଙ୍କୁ ଏକତ୍ରିତ କରି ସାହାଯ୍ୟର ପ୍ରତିଶ୍ରୁତି ପାଇଲା ପରେ ଠାକୁର ରାଜା ବୀରକିଶୋରଙ୍କ ନିକଟକୁ ପତ୍ର ପଠାଇଲେ । ଏହି ପତ୍ରରେ ଉଲ୍ଲେଖ ଥିଲା ଉତ୍କଳ ଅଧିକାର କରିଥିବା ମରହଟ୍ଟାମାନଙ୍କୁ ତଡ଼ିବା ନିମନ୍ତେ ଗଙ୍ଗବଂଶୀ ସୈନ୍ୟମାନଙ୍କ ସାହାଯ୍ୟରେ ଖୋର୍ଦ୍ଧା ସୈନ୍ୟମାନଙ୍କୁ ମିଶାଇ କଟକ ବାରବାଟି କିଲ୍ଲା ଅଧିକାର କରିବା ସହିତ ଉତ୍କଳକୁ ସ୍ୱାଧୀନ କରିବା । ଏହି ପତ୍ର ଜନିତ ନିମନ୍ତ୍ରଣକୁ ବୀରକିଶୋର ଗୁରୁତ୍ୱ ନଦେଇ ବରଂ ଭୁଲ ବୁଝିଲେ ଏବଂ ଦୂତକୁ ଭର୍ତ୍ସନାକରି ମୁଣ୍ଡିତ ବେଶରେ ପଠାଇଦେଲେ । ଖୋର୍ଦ୍ଧା ରାଜାଙ୍କର ଏଭଳି ବ୍ୟବହାରରେ କ୍ରୋଧାନ୍ୱିତ ହୋଇ ପାତ୍ରମନ୍ତ୍ରୀ ଓ ସୈନ୍ୟ ସାମନ୍ତ ସହିତ ୧୭୬୧ରେ ନାରାୟଣଦେବ ଚିଲିକା କୂଳେ କୂଳେ ଯିବା ସମୟରେ ଖୋର୍ଦ୍ଧାର ଘାଟିଗୁଡ଼ିକ ଧ୍ୱଂସକରି ପୁରୀ ଶ୍ରୀମନ୍ଦିରରେ ପ୍ରବେଶ କଲେ । ଏହି ବାର୍ତ୍ତାପାଇ ବୀରକିଶୋର ଖୋର୍ଦ୍ଧା ସୈନ୍ୟମାନଙ୍କୁ ନେଇ ପାରଳାଖେମୁଣ୍ଡି ରାଜାଙ୍କ ଆକ୍ରମଣର ପ୍ରତିରୋଧ କରିବାକୁ ଚେଷ୍ଟାକଲେ । କିନ୍ତୁ ଏହି ଭୟଙ୍କର ଯୁଦ୍ଧରେ ବୀରକିଶୋର ପରାସ୍ତ ହୋଇ ନିଜର ସିଂହାସନ ରକ୍ଷା ନିମନ୍ତେ କଟକର ମରହଟ୍ଟା ସୁବେଦାର ଶିବଭଟ୍ଟଙ୍କ ଶରଣାପନ୍ନ ହେଲେ । ଶିବଭଟ୍ଟଙ୍କ ନିକଟରେ ଖୋର୍ଦ୍ଧା ରାଜା ସହିତ ହେବାରୁ ମରହଟ୍ଟା ସୈନ୍ୟମାନଙ୍କୁ ଯୁଦ୍ଧ ନିମନ୍ତେ ପ୍ରେରଣ କଲେ । ମିଳିତ ଶତ୍ରୁର ଆକ୍ରମଣକୁ ପ୍ରତିହତ କରି ନପାରି ଶେଷରେ ଜଗନ୍ନାଥ ନାରାୟଣଦେବ ପରାସ୍ତ ହେଲେ (୧୪) । ଏଣେ ନାରାୟଣ ଦେବଙ୍କ ଅନୁପସ୍ଥିତିର ଖବର ପାଇ ବିଜୟନଗର ରାଜା ବିଜୟରାମ ରାଜୁ ଓ ସୀତାରାମ ରାଜୁ ପାରଳାଖେମୁଣ୍ଡିର କେତେକ ସୀମାନ୍ତ ଅଞ୍ଚଳ ଅଧିକାର କରିବାକୁ ଲାଗିଲେ । ଏହି ଦୁଃସମ୍ବାଦ ନାରାୟଣ ଦେବଙ୍କୁ ବିବ୍ରତକଲା । ସେ ପୁରୀରୁ ତିନୋଟି ରାଜ ସଙ୍କେତ ଦେବୀପ୍ରତିମା ମାଣିକେଶ୍ୱରୀ, ପାଟହାତୀ ଓ ରାଜକୀୟ ମୁଦ୍ରାରେ ସୁନାଆଁ ଦିନ ରାଜାଙ୍କର ଅଙ୍କକଣ୍ଠା ନିମନ୍ତେ ଅଙ୍କକାଠ ପ୍ରଭୃତି ଧରି ପାରଳା ଫେରି ଆସିଲେ । ଖୋର୍ଦ୍ଧା ରାଜା ମରହଟ୍ଟା ସୁବାଦାରଙ୍କୁ ବିପୁଳ ଅର୍ଥ ଦେବେ ବୋଲି ଅଙ୍ଗୀକାର କରିଥିଲେ । କିନ୍ତୁ ସେ ଅଙ୍ଗୀକୃତ ଅନୁସାରେ ଅର୍ଥ ଦେଇ ନପାରିବାରୁ ଦୟାନଦୀ, ଚିଲିକାହ୍ରଦ ଓ ସମୁଦ୍ର ମଧ୍ୟବର୍ତ୍ତୀ ଲେମ୍ବାଇ, ରହାଙ୍ଗ, ପୁରୁଷୋତ୍ତମ କ୍ଷେତ୍ର ଓ ତାହାଙ୍କ ଅଧୀନସ୍ଥ ଚଉଦ୍ଦଶ ଗଡଜାତର ସତ୍ତ୍ୱ ସହିତ ସବୁ ମରହଟ୍ଟାଙ୍କ ହାତରେ ଅର୍ପଣ କରିଦେଲେ । ଏଣେ ୧୭୬୬ରେ ଇଷ୍ଟଇଣ୍ଡିଆ କମ୍ପାନୀ ହାଇଦ୍ରାବାଦ ନିଜାମଙ୍କ ପାଖରୁ ଉତ୍ତର ସରକାର ପ୍ରାପ୍ତ ହୋଇ ମିଃ କଟ୍ସଫୋର୍ଡଙ୍କୁ ଗଞ୍ଜାମ ପଠାଇଥିଲେ । ଇଂରେଜମାନେ ଗଞ୍ଜାମରେ ଉପସ୍ଥିତ ହେବାପରେ ଇଂରେଜ ଓ ଫରାସୀମାନଙ୍କ ମଧ୍ୟରେ ଭୀଷଣ ଯୁଦ୍ଧ ହୋଇଥିଲା । ଇଂରେଜ ସେନାପତି କ୍ଲାଇବଙ୍କ ଯୁଦ୍ଧ କୌଶଳ ଯୋଗୁଁ ଫରାସୀମାନେ ପରାଜିତ ହୋଇଥିଲେ । ଇଂରେଜ ରେସିଡେଣ୍ଟ ମିଃ କଟ୍ସଫୋର୍ଡ ଗଞ୍ଜାମର ଶାସନ ଶୃଙ୍ଖଳା ଦୃଷ୍ଟିରେ ମନୋନିବେଶ କଲେ । ସେ ଦେଖିଲେ ପାରଳାର ଗଜପତି ରାଜା ଜଗନ୍ନାଥ ନାରାୟଣଦେବ ଗଞ୍ଜାମରେ ଅତି ସମୃଦ୍ଧଶାଳୀ ହୋଇଛନ୍ତି ଏବଂ ଇଂରେଜମାନଙ୍କୁ କର ପ୍ରଦାନ କରିବାକୁ ଅସ୍ୱୀକାର କରୁଛନ୍ତି । ସେ ଜଗନ୍ନାଥ ନାରାୟଣ ଦେବଙ୍କ ସହିତ କୌଣସି ପ୍ରକାର ଶତ୍ରୁତା ନକରି ମାନ୍ଦ୍ରାଜ ଚାଲିଗଲେ । ସେଠାରୁ ସେ ୧୭୬୮ରେ ବଙ୍ଗର ଇଂରେଜ ସେନାପତି କର୍ଣ୍ଣେଲ ପିଚ୍‌ଙ୍କ ସହିତ

ଜାଲମୋର ଦୁର୍ଗଠାରେ ପାରଳାରାଜା ଜଗନ୍ନାଥଙ୍କ ବିରୁଦ୍ଧରେ ଯୁଦ୍ଧ-ଘୋଷଣାକଲେ । ଯୁଦ୍ଧରେ ଇଂରେଜମାନେ ଜୟଲାଭକଲେ ଏବଂ ଗଜପତି ନାରାୟଣଦେବ ପରାସ୍ତହୋଇ ତାଙ୍କର ମାଳପ୍ରଦେଶାନ୍ତର୍ଗତ ଜରାଙ୍ଗ ଅଞ୍ଚଳକୁ ପଳାୟନକଲେ (୧୫) । ସେ ଦୀର୍ଘ ୪୦ବର୍ଷ ରାଜତ୍ୱ କରିବାପରେ ଏହିମାଳଅଞ୍ଚଳରେ ମାନବଲୀଳା ସମ୍ବରଣ କଲେ । ଏହିରାଜା ଯେଉଁଳି ପ୍ରତାପଶାଳୀ ସେହିଭଳି ଧର୍ମ ପରାୟଣ ଥିଲେ । ଯୁଦ୍ଧରୁ ଫେରିବାପରେ ଏହି ରାଜା ତୀର୍ଥଯାତ୍ରା ଉଦ୍ଦେଶ୍ୟରେ ଶ୍ରୀବୃନ୍ଦାବନକୁ ଯାତ୍ରାକରି ସେଠାରେ ଏଗାର ମାସ ଅବସ୍ଥାନ କରିବା ପୂର୍ବକ ବୈଷ୍ଣବ-ଗୁରୁଙ୍କ ଦୀକ୍ଷାମନ୍ତ୍ର ଗ୍ରହଣ କରି ସେଠାରୁ ଫେରି ଆସିଥିଲେ ଏବଂ ପାରଳାର ରାମସ୍ୱାମୀ ମନ୍ଦିରରେ ପ୍ରତ୍ୟହ ଜପ ଓ ଦେବାର୍ଚ୍ଚନ କରି ଧର୍ମ ଓ ସାହିତ୍ୟ ଆଲୋଚନାରେ ବ୍ରତୀ ହେବା ଫଳରେ ପରଳାର ପ୍ରତିସାହିରେ ବୈଷ୍ଣବ ମଠମନ୍ଦିର ଗଢିଉଠିଥିଲା ଏବଂ ରାଜପୃଷ୍ଠପୋଷକତାରେ ବହୁ କାବ୍ୟଗ୍ରନ୍ଥ ସୃଷ୍ଟି ହୋଇଥିଲା । ଏହିଭଳି ଧାର୍ମିକ ପରମ୍ପରା ସୃଷ୍ଟିକାରୀ ଗଜପତି ରାଜା ବହୁ ବର୍ଷ ଶାସନ କରିବାପରେ ତାଙ୍କର ଜ୍ୟେଷ୍ଠପୁତ୍ର ଗୌରଚନ୍ଦ୍ର ଗଜପତି ନାରାୟଣ ଦେବ ପାରଳାର ରାଜା ହେଲେ ।

ଗୌରଚନ୍ଦ୍ର ଗଜପତି ନାରାୟଣ ଦେବ ପାରଳା ରାଜଗାଦିରେ ବସିବା ପରେ ତାଙ୍କର ପ୍ରଧାନମନ୍ତ୍ରୀ ଜନୈକ ବ୍ରାହ୍ମଣ ଅର୍ଜିବେଗ ତାଙ୍କ ପ୍ରତି ବିଶେଷ କାରଣରୁ ବିରକ୍ତ ହୋଇ ତାଙ୍କ କନିଷ୍ଠ ଭ୍ରାତା ଜଗନ୍ନାଥ ଦେବଙ୍କୁ ରାଜସିଂହାସନରେ ବସାଇଦେଇଥିଲେ । ଉପାୟଶୂନ୍ୟହୋଇ ରାଜା ଗୌରଚନ୍ଦ୍ର ଇଂରେଜମାନଙ୍କ ସାହାଯ୍ୟ ନିମନ୍ତେ ମାନ୍ଦ୍ରାଜ ଚାଲିଗଲେ । ସେଠାରୁଫେରି ଜଗନ୍ନାଥ ନାରାୟଣ ଦେବଙ୍କ ସହ ଇଂରେଜମାନଙ୍କର ସନ୍ଧି ହେଲା । କିଛିଦିନପରେ ଜଗନ୍ନାଥ ଦେବ ସନ୍ଧିଭଙ୍ଗ କରି ପେସ୍‌କସ ନ ଦେଇ ଇଂରେଜ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବାରୁ ଇଂରେଜ-ମାନେ ଆକ୍ରମଣକରି ପାରଳା ରାଜସିଂହାସନରୁ ତାଙ୍କୁ ତଡିଦେଇ ତାଙ୍କର ଜ୍ୟେଷ୍ଠଭ୍ରାତା ଗୌରଚନ୍ଦ୍ର ଗଜପତିଙ୍କୁ ପୁଣି ଥରେ ୧୭୯୯ରେ ପାରଳା ରାଜଗାଦିରେ ବସାଇଲେ । ପୂର୍ବର ମନ୍ତ୍ରୀ ବିଶ୍ୱାସ ଘାତକ ବ୍ରାହ୍ମଣ ଅର୍ଜିବେଗଙ୍କୁ ତଡିଦେଇ ତାଙ୍କ ସ୍ଥାନରେ ରାମ ଚେଟିଙ୍କୁ ମନ୍ତ୍ରୀଭାବରେ ସେ ନିଯୁକ୍ତ କଲେ । ଗୌରଚନ୍ଦ୍ର ଗଜପତି [illegible] ରାଜା । ଏହାଙ୍କ ସମୟରେ ପିଣ୍ଡାରିମାନେ ରାଜାଙ୍କର ଏହି ଦୁର୍ବଳ ମନୋଭାବ ଦେଖି ରାଜ୍ୟରେ ବିଭିନ୍ନ ପ୍ରକାର ଅତ୍ୟାଚାର ଆରମ୍ଭ କରିଦେଲେ । ଏହିସମୟରେ ରାଜ୍ୟରେ ଘୋର ବିଦ୍ରୋହ ଦେଖାଦେବାରୁ ଇଂରେଜମାନେ ମିଃ. ଥ୍ୟାକରିଙ୍କୁ ବିଦ୍ରୋହ ଦମନ ନିମନ୍ତେ ତହିଁ ପଠାଇଥିଲେ । ପୁଣି ପାରଳାରେ ସଂଘଟିତ ରାଜକ ବିପ୍ଳବକୁ ଦମନ କରିବା ପାଇଁ ଇଂରେଜ ମାନଙ୍କପକ୍ଷରୁ ମିଃ ଟେଲରଙ୍କୁ ସସୈନ୍ୟ ପାରଳାକିମେଡ଼ିକୁ ପଠାଯାଇ-ଥିଲା । ଏହି ରାଜା ୩୩ ବର୍ଷ ରାଜତ୍ୱ କରିବା କେତେକ ଗବେଷକଙ୍କ ମତରେ—(୧୮୦୬-୧୮୩୯) ଭିତରେ ସେ ବୃନ୍ଦାବନ ସାଗର, ଚୈତନ୍ୟ-ସାଗର, କୃଷ୍ଣସାଗର, ଧର୍ମସାଗର ଓ ଦେବସାଗର ପ୍ରଭୃତି ଚାରିଗୋଟିସାଗର ପାରଳା ରାଜରେ ଖନନ କରାଇଥିଲେ ଏବଂ ଗାରାବନ୍ଧ, [illegible], ଅଣରାଶି ଓ ଶଳା କୋଲ ପ୍ରଭୃତି ସ୍ଥାନରେ ପଥିକମାନଙ୍କ ନିମନ୍ତେ ସଦାବର୍ତ୍ତ ଖୋଲିଥିଲେ । ଓଡ଼ିଆ ଓ ତେଲୁଗୁ ବ୍ରାହ୍ମଣମାନଙ୍କୁ କେତେଗୋଟି ଶାସନ ଦାନକରିଥିଲେ ଏବଂ ବୃନ୍ଦାବନଠାରେ ଗୋଟିଏ କୁଞ୍ଜ ନିର୍ମାଣ କରାଇ ସେଠା ଦେବତାଙ୍କର ସେବା ପୂଜା ନିମନ୍ତେ "ଜବା" ନାମକ ଗୋଟିଏ ଗ୍ରାମ ଦାନ ଦେଇଥିଲେ । ଏହାଙ୍କ ମୃତ୍ୟୁପରେ ତାହାଙ୍କ ପୁତ୍ର ନାରାୟଣ ଦେବ (ଚନ୍ଦ୍ରଧର ଦେବ) ରାଜାହୋଇ ନିଃସନ୍ତାନ ପୂର୍ବକ ଅଳ୍ପ ବର୍ଷରେ ମରିଯିବାରୁ ଗୌରଚନ୍ଦ୍ରଙ୍କ ଭାଇ ପୁରୁଷୋତ୍ତମ ଦେବ ପାରଳାର ରାଜା ହେଲେ । ପାରଳାଖେମୁଣ୍ଡିକୁ ବିଦେଶୀ ଶାସନରୁ ମୁକ୍ତରଖିବା ନିମନ୍ତେ ଶବର ଓ ପାଇକ ସୈନ୍ୟ ପ୍ରସ୍ତୁତ କରି ନିଜ ପିତାଙ୍କ ମତ ଅନୁସରଣ କଲେ ।

ପୁରୁଷୋତ୍ତମ ଦେବ ତିନିବର୍ଷ ରାଜତ୍ୱ କଲେ । ଏହି ସମୟରେ ସେ ଟେକ୍‌କାଲି ତାଲୁକା ଅଧିକାର କରି ତାଙ୍କ ଭ୍ରାତାଙ୍କୁ ପ୍ରଦାନକରି ସେଠାରେ ତାଙ୍କୁ ରାଜା କରାଇଲେ । ଏହି ରାଜା ପୁରୁଷୋତ୍ତମ ଦେବ ବାଲ୍ୟକାଳରେ ପାରଳାଖେମୁଣ୍ଡି ତାଲୁକା Court of wards ଅଧୀନରେ ରହିଲା । ଅଳ୍ପ ବର୍ଷ ରାଜତ୍ୱ କଲାପରେ ଗଞ୍ଜାମରେ ତାଙ୍କର ଦେହାବସାନ ହୋଇଥିଲା ।

ରାଜା ପୁରୁଷୋତ୍ତମ ଦେବଙ୍କ ଗଞ୍ଜାମରେ ଅକାଳ ମୃତ୍ୟୁ ହେବାରୁ ଏବଂ ତାହାଙ୍କ ପୁତ୍ର ଦ୍ୱିତୀୟ ଜଗନ୍ନାଥ ନାରାୟଣଦେବ ନାବାଳକ ଥିବାରୁ ପାରଳା ରାଜ୍ୟ ପୁଣି କୋର୍ଟ ଅଫ୍‌ୱାର୍ଡସ ଅଧୀନରେ ରହିଲା । ୧୮୩୦ ବେଳକୁ ଖେମୁଣ୍ଡିରେ ବିଦ୍ରୋହ ଦେଖା ଦେବାରୁ ମିଃ ରସେଲଙ୍କ ହସ୍ତକ୍ଷେପ ଫଳରେ ତାହା ଆଉ ଭୟଙ୍କର ଆକାର ଧାରଣ କରିପାରିଲା ନାହିଁ । ସେତେବେଳେ ସମଗ୍ର ଖେମୁଣ୍ଡି ରାଜ୍ୟରେ ସାମରିକ ଆଇନ୍ ଘୋଷିତ ହେଲା । କେତେକ ବିଦ୍ରୋହୀ ନେତାଙ୍କୁ ବିନା ବିଚାରରେ ମୃତ୍ୟୁଦଣ୍ଡ ଦିଆଗଲା । ଟେକ୍‌କାଲିର ବିଦ୍ରୋହୀ ଘୁଡୁଆପାଟ୍ଟିଙ୍କୁ ଧରିବା ପାଇଁ [illegible] ବିଶୋୟୀଙ୍କ ସହିତ ସରକାରଙ୍କ ଯୁଦ୍ଧମହଡ଼ାର ଘଟଣା ଅତି ଭୟଙ୍କର ହୋଇଥିଲା । ମିଃ ରସେଲଙ୍କ ସାମୟିକ ଅନୁପସ୍ଥିତିରେ ନିଯୁକ୍ତ ମେଜର ବକ୍‌ଷ୍ଟରଙ୍କ କାର୍ଯ୍ୟରେ ଭୁଲ କରାଗଲା ସେତେବେଳେ ବିଶୋୟୀମାନେ ଦେଶୀ ବନ୍ଧୁକ ବ୍ୟବହାର କରୁଥିଲେ । କନ୍‌ଷ୍ଟରେ ପ୍ରାଣତ୍ୟାଗ କରିବା ଫଳରେ ସମରମାଳ ଓ ଟୁଲା ଭିଗର ପାଇକମାନେ ସାହେବ ମାନଙ୍କୁ ନିହତ କରିବାପାଇଁ ପ୍ରତିଜ୍ଞାବଦ୍ଧ ହେଲେ । ସଶସ୍ତ୍ରସିପାହୀ ଏହି ଅଞ୍ଚଳପୁଞ୍ଜକୁ ଘଠା-ହୋଇଥିଲେ ମଧ୍ୟ ନିବିଡ଼ ଜଙ୍ଗଲ ଓ ପାହାଡ଼ିଆ ଅଞ୍ଚଳରେ ଅବକାଶ

ପାଇକ ମାନଙ୍କର ପ୍ରବଳ ପ୍ରତିରୋଧ ଯୋଗୁଁ ବହୁ ସିପାହୀ ପ୍ରାଣତ୍ୟାଗକଲେ । ତଥାପି ସିପାହୀମାନେ ଲବଣ୍ୟଗଡ଼ ଓ ରାଘୁଗଡ଼ ବିଦ୍ରୋହୀଙ୍କୁ ବନ୍ଦୀକରି ପ୍ରାଣଦଣ୍ଡଦେଲେ । ବିଦ୍ରୋହୀନେତାଙ୍କୁ ଧରିବା ସମ୍ଭବ ନହେଲେ ସୁଦ୍ଧା ୧୮୩୪ ବେଳକୁ ବିଦ୍ରୋହର ଅବସାନ ଘଟିଥିଲା । ମିଃ ରସେଲଙ୍କ ନିଷ୍ପତ୍ତି ଅନୁସାରେ ପାରଳାଖେମୁଣ୍ଡିରେ ଅବସ୍ଥିତ ଗୁରିସାନ୍ ପାଇକଙ୍କ ସଂଖ୍ୟା କମାଇଦିଆଗଲା । ପୁଣି ମାଳ ଅଞ୍ଚଳର ବିଦ୍ରୋହୀମାନଙ୍କଠାରୁ ସ୍ଥଳବଟ ଦୋରମାନଙ୍କୁ ବିଚ୍ଛିନ୍ନ କରାଗଲା । ଏହି ବିଦ୍ରୋହ ଅଭିଯୋଗରେ ଲବଣ୍ୟଗଡ଼ ଓ ରାଘୁଗଡ ବିଦ୍ରୋହୀଙ୍କ ସମେତ ଅନ୍ୟ ତେରଜଣ ପାଇକ ନେତାଙ୍କୁ ପ୍ରାଣଦଣ୍ଡ ଦିଆଗଲା । ଏହିଭଳି ପରିସ୍ଥିତି ମୁହୂର୍ତ୍ତରେ ଜଗନ୍ନାଥ ନାରାୟଣଦେବ (୩ୟ) 'ସୁନାମହାଦେବୀ' ନାମକ ଗଣିକାର ସଂସର୍ଶରେ ଆସିଥିଲେ ମଧ୍ୟ ପ୍ରକୃତ ରାଣୀଙ୍କୁ ସେ ବନ୍ଦୀ କରିଦେବାରୁ ପାରଳାର ପ୍ରଜାବର୍ଗ କୌଶଳରେ ସୁନାମହାଦେବୀଙ୍କୁ କୂପମଧ୍ୟରେ ନିକ୍ଷେପକରି ହତ୍ୟା କରିଥିଲେ । ପ୍ରକୃତ ରାଣୀଙ୍କ ଗର୍ଭରୁ ଜନ୍ମ ହେଲେ ପ୍ରତାପରୁଦ୍ର ଗଜପତି ନାରାୟଣଦେବ । ତାଙ୍କ ଜନ୍ମର କିଛି ବର୍ଷପରେ ମାତାଙ୍କର ପରଲୋକ ହୋଇଯିବାରୁ ଜଗନ୍ନାଥ ନାରାୟଣଦେବ ଦ୍ୱିତୀୟବାର ବିବାହ କଲେ । ଦ୍ୱିତୀୟରାଣୀଙ୍କ ଗର୍ଭରୁ ଜନ୍ମ ହେଲେ ରାଜରାଜେଶ୍ୱରଦେବ । ଇଂରେଜ ସରକାରଙ୍କ ଦ୍ୱାରା ପାଳିତ ପ୍ରତାପରୁଦ୍ର ସାବାଳକ ହୋଇ ପାରଳାଖେମୁଣ୍ଡିରେ ସାତବର୍ଷ ରାଜତ୍ୱ କରିଥିଲେ । ଏହାଙ୍କ ରାଜତ୍ୱ ସମୟରେ ପାରଳାଖେମୁଣ୍ଡି ଜିରାଙ୍ଗମାଳ ଅଞ୍ଚଳର କନ୍ଧମାନଙ୍କ ଦ୍ୱାରା ଫିତୁରୀ (ମେଳି) ହୋଇଥିଲା । ରାଜରାଜେଶ୍ୱର ଦେବ ଇଚ୍ଛାପୁରରେ ରାଜତ୍ୱ କରିଥିଲେ ।

ତୃତୀୟ ଜଗନ୍ନାଥ ନାରାୟଣ ଦେବଙ୍କୁ ରାଜ୍ୟ ସମର୍ପଣ କାଳବେଳେ ଇଷ୍ଟେଟ ଭଣ୍ଡାରରେ ଗଚ୍ଛିତ ଥିଲା ଚଉଦ ଲକ୍ଷ ଏକସ୍ତରୀ ହଜାର ଟଙ୍କା । ସେଥିରୁ ସାଢ଼େତେରି ଲକ୍ଷ ଟଙ୍କା ୧୮୬୫ ମେ ମାସ ୨୦ ତାରିଖରେ ନୂତନ ରାଜପ୍ରାସାଦ ନିର୍ମିତହେବା ପାଇଁ ଟଙ୍କା ମଞ୍ଜୁର ହେଲା । ଏହିସମୟରେ ବ୍ରିଟିଶ ଇଞ୍ଜିନିୟର ମିଃ ଚିସୋମ୍ (Mr. Chisholm) ଙ୍କ ନକ୍ସା ଓ ସୁଦକ୍ଷ କାରିଗରୀ କୌଶଳରେ ତାଲିମପ୍ରାପ୍ତ ସ୍ଥାନୀୟ କାରିଗର ଓ ଶ୍ରମିକମାନଙ୍କ ଦ୍ୱାରା ଲଣ୍ଡନର ବକିଙ୍ଗହାମ୍ ରାଜପ୍ରାସାଦ ଭଳି ଲୋଭନୀୟ ଓ ଦର୍ଶନୀୟ ରାଜପ୍ରାସାଦ ନିର୍ମିତ ହେଲା । ଶିଳ୍ପଭଳି ସାହିତ୍ୟ ଓ ସଂଗୀତ କ୍ଷେତ୍ରରେ ମଧ୍ୟ ପାରଳାଖେମୁଣ୍ଡି ଏହିସମୟରେ ବହୁ ଉଚ୍ଚସ୍ତରରେ ଥିଲା । ଜଗନ୍ନାଥ ନାରାୟଣଦେବଙ୍କ ପୃଷ୍ଠପୋଷକତାରେ ଗୋପାଳକୃଷ୍ଣ, ଗୌରହରି, ରଘୁନାଥ, ପଦ୍ମନାଭ ପ୍ରଭୃତି କବି ସଙ୍ଗୀତଜ୍ଞ ସଂସ୍କୃତି କ୍ଷେତ୍ରରେ ଉଚ୍ଚସ୍ଥାନ ଲାଭ କରିଥିଲେ । ଏମାନେ ପାରଳା ରାଜଦରବାରରେ ସ୍ୱତନ୍ତ୍ର ମର୍ଯ୍ୟାଦା ଲାଭ କରିଥିଲେ । ଏହିସମୟରେ ପାରଳା ରାଜ୍ୟରେ ବିଦ୍ରୋହ ଲାଗିରହିଥିଲେ ମଧ୍ୟ କବି ଓ କଳାକାର ମାନଙ୍କ ପ୍ରତିଭା ବିକାଶର ପଥରୁଦ୍ଧ ହୋଇଯାଇ ନଥିଲା । ପାରଳା ଖେମୁଣ୍ଡି ରାଜ୍ୟର ଚିରସ୍ଥାୟୀ ବନ୍ଦୋବସ୍ତ ୧୮୩୧ରେ ଆରମ୍ଭ ହୋଇ ୧୮୬୧ ରେ ବ୍ଲକ ସର୍ଭେ କାମ ଚାଲିଲା । ୧୮୬୮ରେ ଏହା ସଂପୂର୍ଣ୍ଣ ହେବାପରେ ୧୮୮୦ ବେଳକୁ ସର୍ଭେର ସଂଶୋଧନ ସଂପୂର୍ଣ୍ଣ ହେଲା । ସେତେବେଳେ ଏହି ଜମିଦାରୀରେ ୫୦୩ଟି ଗ୍ରାମ ଓ ୫୫୨୪ଟି ମୁଠା (ଖଣ୍ଡ) ରେ ବିଭକ୍ତ ହୋଇଥିଲା ।

ଜଗନ୍ନାଥ ନାରାୟଣ ଦେବଙ୍କ ପୁତ୍ର ପ୍ରତାପରୁଦ୍ର ସାବାଳକ ହେଲାପରେ ରାଜଗାଦିରେ ବସିଲେ ସତ ମାତ୍ର ଧର୍ମପରାୟଣ ହୋଇ ରାଜ୍ୟର ପରିଚାଳନାଭାର କୋର୍ଟ ଅଫ ୱାର୍ଡ଼ସକୁ ଦେଇ ତପସ୍ୱୀ ଜୀବନ ବିତାଇଲେ । ସେ ପାରଳା ନିକଟବର୍ତ୍ତୀ ରାମଲିଙ୍ଗେଶ୍ୱରଠାରେ ଶିବ ମନ୍ଦିର ନିର୍ମାଣକଲେ ଏବଂ ତାହାଙ୍କ ରାଣୀ ପାଟମହାଦେବୀ କୃତ୍ତିପ୍ରିୟା ମେଳିଆ ପୁଟିଠାରେ କାରୁକାର୍ଯ୍ୟ ଖଚିତ ପୁରୀ ଜଗନ୍ନାଥ ମନ୍ଦିର ଭଳି ରାଧାଗୋବିନ୍ଦ ମନ୍ଦିର ନିର୍ମାଣକଲେ । ଦାନ ଭୋଜନ ଦେଲେ । ନଗରରେ ହାତୀଘୋଡ଼ା ସାଜକୁ ସୁବର୍ଣ୍ଣଡମ୍ବରେ ସିଂହାସନ ନିର୍ମାଣକଲେ । ନୂଆ ନଗରମାନ ନିର୍ମାଣକଲେ । ଏହିସମୟରେ ସମଗ୍ର ମାଳ ଓ ସ୍ଥଳ ଅଞ୍ଚଳରେ ବିଦ୍ରୋହ ଲାଗିଯିବାରୁ ଏହା "ଗୁମ୍ମା ଗାଇବା ମେଳି" ଭାବରେ ସର୍ବତ୍ର ପରିଚିତ ଥିଲା । ଏହାଙ୍କ ସମୟରେ ପାରଳାଖେମୁଣ୍ଡିର ନାରାୟଣ ଗନ୍ତାୟତଙ୍କ ଭୂମିକା ଉଲ୍ଲେଖନୀୟ । ପ୍ରତାପରୁଦ୍ରଙ୍କ ଚାରିପୁତ୍ର ଗୌରଚନ୍ଦ୍ର, ପୁରୁଷୋତ୍ତମ, ଜଗନ୍ନାଥ (୪ର୍ଥ), ପଦ୍ମନାଭ । ଜ୍ୟେଷ୍ଠପୁତ୍ର ଗୌରଚନ୍ଦ୍ର ରାଜଗାଦିରେ ବସିବାପରେ ପାରଳାର ଇତିହାସ ସାହିତ୍ୟ, ସଂସ୍କୃତି, ସଙ୍ଗୀତ ଓ ନାଟ୍ୟକର ବିକାଶ ହୋଇଥିଲା । ଏହାଙ୍କ ସମୟରେ ପଦ୍ମନାଭ ଗଜପତି ସଂସ୍କୃତପ୍ରେମୀ ହୋଇ କୁସୁମୁଣ୍ଡିର ରାଜକୁମାରୀ ପଦ୍ମାବତୀଦେବୀଙ୍କୁ ବିବାହକରି ଯେଉଁ ସାଂସ୍କୃତିକ ବାତାବରଣ ସୃଷ୍ଟି କରିଥିଲେ ତାର ପଟାନ୍ତର ନାହିଁ । ବହୁକବି ସାହିତ୍ୟିକ ସଙ୍ଗୀତଜ୍ଞ ଏହି ମାଟିରେ ଜନ୍ମହୋଇ ଯଶ ଗୌରବ ରଖିଯାଇଛନ୍ତି ।

ଗୌରଚନ୍ଦ୍ର ଗଜପତି ନାରାୟଣଦେବ ଜୟପୁରର ରାଜା ବିକ୍ରମଦେବ ବର୍ମାଙ୍କ ଭଉଣୀ ସୁବର୍ଣ୍ଣଦେବୀଙ୍କୁ ବିବାହ ଏବଂ ତାଙ୍କ ମୃତ୍ୟୁପରେ ପୁରୁଣାପାଟଣା ରାଜକନ୍ୟା ରାଧାମଣି ଦେବୀଙ୍କୁ ଦ୍ୱିତୀୟ ରାଣୀ ଭାବରେ ଗ୍ରହଣକଲେ । ରାଧାମଣିଙ୍କ ଗର୍ଭରୁ ଜନ୍ମ ହୋଇଥିଲେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି । ଗୌରଚନ୍ଦ୍ର ଥିଲେ ବୀର, ଧୀର ରୂପବନ୍ତ, ଧନବନ୍ତ, ଗୁଣବନ୍ତ । ଲକ୍ଷେ ମୁଦ୍ରା ବ୍ୟୟରେ

ମହେନ୍ଦ୍ରତନୟା ତଟରେ ନିର୍ମାଣକରିଥିଲେ ବୃନ୍ଦାବନପ୍ରାସାଦ (ବର୍ତ୍ତମାନର ବସନ୍ତବିହାର) । ନୌପଡ଼ାଠାରୁ ପାରଳାଖେମୁଣ୍ଡି ପର୍ଯ୍ୟନ୍ତ ପ୍ରଜାମାନଙ୍କ ଗମନାଗମନ ନିମନ୍ତେ ସଂକୀର୍ଣ୍ଣ ରେଳରାସ୍ତା ନିର୍ମାଣ, ଦେବବିଗ୍ରହ ସ୍ଥାପନ ଓ ଦାନ ଧର୍ମ ଆଦି କରି ପାରଳାରେ ଅକ୍ଷୟ କୀର୍ତ୍ତି ରଖିଯାଇଛନ୍ତି । ରାଜା ଗୌରଚନ୍ଦ୍ର ଇଂରେଜୀ ଶିକ୍ଷାବିତ୍‌ମାନଙ୍କ ସଂସ୍ପର୍ଶରେ ଆସି ଇଷ୍ଟେଟର ପରିଚାଳନା ପାଇଁ ମିଃ ଟେଲରଙ୍କୁ ତାଙ୍କର ସଚିବ ରୂପେ ନିଯୁକ୍ତ କରିଥିଲେ । ତାହାଙ୍କ ଉପଦେଶ ଅନୁସାରେ ପାରଳାଖେମୁଣ୍ଡିରେ ଉଚ୍ଚବିଦ୍ୟାଳୟ ସ୍ଥାପିତ ହେଲା । ପୁଣି ଦୋର ଓ ମାଲ ଅଞ୍ଚଳକୁ ଛିନ୍ନ କରିଦିଆଗଲା । ସ୍କୁଲ୍‌କଲେଜ ସ୍ଥାପନ ସାଙ୍ଗକୁ ନାରୀଶିକ୍ଷାର ପ୍ରଗତି ପାଇଁ ବାଳିକା ବିଦ୍ୟାଳୟ ସ୍ଥାପନ ତାହାଙ୍କ ଦୂରଦୃଷ୍ଟିର ଆଉ ଏକ ନିଦର୍ଶନ । ତାହାଙ୍କ କାର୍ଯ୍ୟ ଦକ୍ଷତା ଯୋଗୁଁ ସମଗ୍ର ପାରଳା ରାଜ୍ୟରେ ଶିକ୍ଷା, ସଂସ୍କୃତି କ୍ଷେତ୍ରରେ ପାଶ୍ଚାତ୍ୟ ସଭ୍ୟତାର ପ୍ରଭାବ ପରିଲକ୍ଷିତ ହୁଏ । ଗଞ୍ଜାମର ପ୍ରଥମ ଗ୍ରାଜୁଏଟ ଶ୍ୟାମସୁନ୍ଦର ରାଜଗୁରୁଙ୍କର ପ୍ରତ୍ୟକ୍ଷ ପ୍ରଭାବରେ ଗୌରଚନ୍ଦ୍ର ଏବଂ ପଦ୍ମନାଭଙ୍କର ମାନବୀୟ ଗୁଣାବଳୀର ବିକାଶ ହୋଇଥିଲା । ୧୯୦୪ରେ ବିଶାଖାପାଟଣାରେ ଗୌରଚନ୍ଦ୍ରଙ୍କର ଅକାଳ ବିୟୋଗ ହେବାରୁ ଓ ତେର ବର୍ଷର ପୁତ୍ର କୃଷ୍ଣଚନ୍ଦ୍ର ନାବାଳକ ହୋଇଥିବାରୁ ପାରଳା ରାଜ୍ୟଟିର କୋର୍ଟ ଅଫ ଓ୍ୱାର୍ଡ଼ସ ହାତକୁ ଗଲା ।

୧୯୧୩ରେ କୃଷ୍ଣଚନ୍ଦ୍ର ଗଜପତି ନାରାୟଣଦେବ ପାରଳା ରାଜସିଂହାସନରେ ବସିବାପରେ ୧୯୧୪ ଜାନୁୟାରୀ ୨୮ ତାରିଖରେ ଖରସୁଆଁର ମହେନ୍ଦ୍ର ନାରାୟଣ ସିଂହଦେବଙ୍କ କନ୍ୟା ନଳିନୀଦେବୀଙ୍କୁ ବିବାହକଲେ । ଗଜପତି କୃଷ୍ଣଚନ୍ଦ୍ର ଥିଲେ ବିଦ୍ୟାନୁରାଗୀ, ପ୍ରଜାବତ୍ସଳ, ନୀତିପରାୟଣ । ଶିକ୍ଷା, ଶିଳ୍ପ, କୃଷି, ଜଳସେଚନ, ଗମନାଗମନ ସାହିତ୍ୟ ଓ ସଂସ୍କୃତିର ବିକାଶ ପାଇଁ ନିଜ ଜୀବନକୁ ଉତ୍ସର୍ଗ କରିଥିଲେ । ଉତ୍କଳ ସମ୍ମିଳନୀର ଦଶମ ଅଧିବେଶନରେ ଓଡ଼ିଆ ଭାଷାଭାଷୀ ସମସ୍ତ ଅଞ୍ଚଳକୁ ମିଶାଇ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ ପ୍ରସ୍ତାବ ସର୍ବ ସମ୍ମତିକ୍ରମେ ଗୃହୀତକରାଇ ନିଜର ଜାତିପ୍ରୀତିର ପରିଚୟ ଦେଇଥିଲେ । ମହାରାଜା କୃଷ୍ଣଚନ୍ଦ୍ରଙ୍କର ପ୍ରଗାଢ଼ ଉଦ୍ୟମ ଓ ନିଷ୍ଠା ଯୋଗୁ ୧୯୩୬ ଅପ୍ରେଲ ପହିଲାରେ ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ସ୍ୱୀକୃତି ଲାଭକରି ସମ୍ମାନିତ ହୋଇଥିଲା । କୃଷ୍ଣଚନ୍ଦ୍ର ପ୍ରଥମେ ରାଜା ଓ ପରେ ନିଜ ଦକ୍ଷତା ଯୋଗୁ ମହାରାଜା ଉପାଧି ଲାଭକରିବା ପରେ ବିଭିନ୍ନ ପଦପଦବୀରେ ଅବସ୍ଥାନକରି ନିଜ କୃତିତ୍ୱର ପରିଚୟ ଦେଇ ଯାଇଛନ୍ତି ।

ସେ ରୟାଲ ଏଗ୍ରିକଲ୍‌ଚରାଲ କମିଶନର ସଭ୍ୟ, କୋଏମ୍ବାଟୁର ସରକାରୀ କୃଷି କଲେଜର ଅବୈତନିକ ପରାମର୍ଶଦାତା ଓ ପରିଦର୍ଶକ, ଭାରତର ନୂଆଦିଲ୍ଲୀଠାରେ ଅବସ୍ଥାପିତ ଭାରତୀୟ ରିସର୍ଚ୍ଚ ଫଣ୍ଡ ଆସୋସିଏସନର ଗଭର୍ଣ୍ଣିଙ୍ଗ ବଡ଼ି ଓ ବୈଜ୍ଞାନିକ ଉପଦେଷ୍ଟା ବୋର୍ଡର ସଭ୍ୟ, ଲଣ୍ଡନ ରୟାଲ ଏସିଆଟିକ୍ ସୋସାଇଟିର ସଭ୍ୟ, ପ୍ରଥମ ଗୋଲ ଟେବୁଲ ବୈଠକରେ ଭାରତୀୟ ପ୍ରତିନିଧି, ଅଖିଳଭାରତ ଜମିଦାରୀ ସଦର ପ୍ରତିନିଧି, ଓଡ଼ିଶା ସୀମାନିର୍ଦ୍ଧାରଣ କମିଟିର ପୁରୋଧା, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ପ୍ରଥମ ପ୍ରଧାନମନ୍ତ୍ରୀ, ଭାରତ ବ୍ରିଟେନ ବାଣିଜ୍ୟିକ ଚୁକ୍ତି ସଂସ୍ଥାର ସଭ୍ୟ ଓ ସାମ୍ବିଧାନିକ ସଭାର ସଭ୍ୟ ଭାବରେ ଦକ୍ଷତାର ସହିତ କାର୍ଯ୍ୟକରି ପ୍ରଶଂସା ଭାଜନ ହୋଇଛନ୍ତି । ବିଭିନ୍ନ ଶିଳ୍ପ ସଂସ୍ଥାର ନିର୍ଦ୍ଦେଶକ ଭାବରେ କାର୍ଯ୍ୟକରି ଭାରତରେ ଶିଳ୍ପସଂସ୍ଥାର ବିକାଶ ଘଟାଇ ଭାରତୀୟ ଅର୍ଥନୈତିକ ଅବସ୍ଥାକୁ ସୁଦୃଢ଼ କରାଇ ପାରିଥିଲେ । ଏତଦ୍ ବ୍ୟତୀତ ପିତୃପିତାମହଙ୍କ ଦ୍ୱାରା ନିର୍ମିତ ହୋଇଥିବା ସାଗର ଗୁଡ଼ିକର ରକ୍ଷଣାବେକ୍ଷଣ କରିବା ସହିତ ସେ ନିଜେ ଜଳସେଚନର ସୁବିଧା ନିମନ୍ତେ ନଳିନୀ, କୃଷ୍ଣସାଗର ଓ ଓ ବାଗାସାଗର ପ୍ରତ୍ୟେକ ଏକଲକ୍ଷ ଟଙ୍କା ବ୍ୟୟରେ ନିର୍ମାଣ କରିଥିଲେ । ଏହି ସାଗର ଦୁଇଟି କୃତୀ ଇଞ୍ଜିନିୟର ମୁଲାର ସାହେବଙ୍କ ତତ୍ତ୍ୱାବଧାନରେ ନିର୍ମାଣ କରାଇଥିଲେ ।

ବଂଶଧାରା, ମହେନ୍ଦ୍ରତନୟାର ମଧ୍ୟବର୍ତ୍ତୀ ତଟ ଶସ୍ୟଶ୍ୟାମଳିମା ପାରଳା ନଗରୀ ଦେବଗିରି, ଅଜୟଗିରି ଓ ଚମ୍ପାଗିରି ଆଦି ଉଚ୍ଚ ପର୍ବତମାଳାର ମଝିରେ ମୌନାବସ୍ଥ ହୋଇ ଶ୍ରୀରାମସ୍ୱାମୀ, ଶ୍ରୀଜଗନ୍ନାଥ ଓ ଦେବୀ ମାଣିକେଶ୍ୱରୀଙ୍କର ଆଶୀର୍ବାଦ ଲଭି ଗଙ୍ଗବଂଶୀ ଗଜପତି ରାଜବଂଶକୁ ପରିପାଳନ କରି ଏହିମାଟିର ଐତିହ୍ୟ ଓ ପରମ୍ପରାକୁ ବଜାୟ ରଖିପାରିଛି ।

**ପାଦଟୀକା :**

(P) Hiralal's Inscriptions in C. P. and Berar, PP. 33-34 ff.

(୨) "ତେଷାଂ କୀର୍ତ୍ତି- ପ୍ରବାହୈଃ ପ୍ରତିପଦ ମୁଦୟତ୍ ସ୍ୱର୍ଧୁନୀ ସଙ୍ଗ ସୌଖ୍ୟ -
ପ୍ରେକ୍ଷ୍ୟତ୍ କଲ୍ଲୋଳ-କେଳିଃ କଳୟତି ଜଳଧିସ୍ତାନ ଲୀଳା ଯୁତାନଃ ।
ତେଷାଂବଂଶେ ବିଶଦ ଯଶ-ସା ଚୈତ୍ରଗଙ୍ଗ କ୍ଷିତୀନ୍ଦ୍ର-
ବ୍ୟାଜବ୍ୟକ୍ତ ନରହରି ତନୋ-ର୍ଜୋତିରାବିର୍ବଭୂବ ।" (ଚୈଟେଶ୍ୱର ଶିଳାଲିପିର କିୟଦଂଶ)

(୩) " ତତୋ ଯଯାତ ବିଜିତାର ଯୁତର୍ଜ୍ଜେ ତତସ୍ତୁତସ୍ୟ ଭୂବରେଣଃ
ସମ୍ପୂର୍ଣ ଗୀର୍ବାଣ ଗୁଣୈର୍ଗରିମା ମାତା - ମହସ୍ୟୋରପି ହି ପ୍ରବୃଦ୍ଧଃ ।
ଅପୁତ୍ରତ୍ୱଂ ପ୍ରାପ୍ତ ସୁତଃ ମତଶିନ୍ନୋ ନୃପ ବୃଷଃ
ସ ଗଙ୍ଗାମାରାଧ୍ୟାଂ ନୟୃତ-ଗତରାତ୍ରୀ ବରଦାମ୍
ଅଜେୟଂ ଗାଙ୍ଗେୟଂ ସୁତମଲଭତା ରଭଂଚତଦା
କ୍ରମଶଃ ପ୍ରତପ୍ତ-ଶ୍ୟାନାଂ ଭୂବକଯ୍ୟତ ଗଙ୍ଗା ନ୍ୟୂଇତ । (ଚୋଡ଼ଗଙ୍ଗଦେବଙ୍କ ତାମ୍ର ଶାସନର କିୟଦଂଶ)
(୪) Indian Antiquary. Vol. XIV. P. 51
(୫) " କୋଲାହଲଃ ସମର-ମୂର୍ଦ୍ଧନି-ତୋ ନୃପାଣାଂ ।
ଭୂତୋୟତଃ ସରପୂରଞ୍ଚ ତଦୀୟ ମାନଂ ।
କୋଲାହଲା-ହ୍ୱୟମଭୂତ ସୁରସଦ୍ମ ।
ତୁଲାଂ ତର୍ସ୍ମିନ୍ କମେ ନୃପତି ବହୁଭବଭୂବେ । (ନରସିଂହ ଦେବଙ୍କ ତାମ୍ର ଶାସନର କିୟଦଂଶ)
(୬) ଓଡ଼ିଶାର କେଶରୀ ବଂଶୀୟ ଶେଷରାଜା ସୁବର୍ଣ୍ଣ କେଶରୀଙ୍କର ସଚିବ ଥିଲେ ବାସୁଦେବ । ସେ ସୁବର୍ଣ୍ଣ କେଶରୀଙ୍କ ଦ୍ୱାରା ଅପମାନିତ ଓ ନିର୍ବାସିତ ହୋଇ କର୍ଣ୍ଣାଟଦେଶୀୟ ଚୋଡ଼ଗଙ୍ଗଙ୍କୁ ଓଡ଼ିଶା ଆକ୍ରମଣ ନିମନ୍ତେ ଉତ୍ତେଜିତ କରିଥିଲେ ଏବଂ ଚୋଡ଼ଗଙ୍ଗଙ୍କୁ ଓଡ଼ିଶାରେ ଅଭିଷିକ୍ତ କରାଇ ତାହାଙ୍କର ସେ ମନ୍ତ୍ରୀପଦ ପାଇଥିଲେ । ରାଜଚରିତ ଗ୍ରନ୍ଥରେ ବର୍ଣ୍ଣିତ ଅଛି ସୁବର୍ଣ୍ଣକେଶରୀଙ୍କର ମନ୍ତ୍ରୀଥିଲେ ବାସୁଦେବ । ସୁବର୍ଣ୍ଣକେଶରୀ ନିଃସନ୍ତାନ ଥିବାରୁ ସେ ଦକ୍ଷିଣରୁ ଜଣେ ରାଜାଙ୍କୁ ଡ଼ାକିଆଣି ଓଡ଼ିଶାରେ ରାଜା କରାଇ ଦେଇଥିଲେ । ରାଧାନାଥଙ୍କ 'ନନ୍ଦିକେଶରୀ' କାବ୍ୟାନୁସାରେ ବାସୁଦେବ ସୁବର୍ଣ୍ଣ କେଶରୀଙ୍କୁ ଅପୁତ୍ରିକ ଦେଖି ସେ ଚୋଡ଼ଗଙ୍ଗଙ୍କୁ ଜାମାତା ପଦରେ ବରଣ କରିବାପାଇଁ ପ୍ରଥମେ ସୁବର୍ଣ୍ଣ କେଶରୀଙ୍କୁ ଉପଦେଶ ଦେଇଥିଲେ । ସୁବର୍ଣ୍ଣ କେଶରୀ ବାସୁଦେବଙ୍କ କଥାରେ ରାଗିଯାଇ ତାହାଙ୍କୁ ପରିତ୍ୟାଗ କରିଥିଲେ । ଫଳରେ ବାସୁଦେବ ଚୋଡ଼ଗଙ୍ଗଙ୍କର ଆଶ୍ରୟ ନେଇଥିଲେ । ଅତଏବ ବାସୁଦେବ ମଧ୍ୟ ଚୋଡ଼ଗଙ୍ଗ ଦେବଙ୍କ ସମସାମୟିକ ଥିଲେ ।
(୭) ପାରଳାଖେମୁଣ୍ଡି ରାୟସାହେବ ଗିଡୁଗୁ ଭେଙ୍କଟ ରାମମୂର୍ତ୍ତିଙ୍କ 'ମୁଖଲିଙ୍ଗ' ବିବରଣୀ ଦ୍ରଷ୍ଟବ୍ୟ ।
(୮) ଭୁବନେଶ୍ୱରର କେଦାରେଶ୍ୱର ମନ୍ଦିରର ଶିଳାଲିପି ଦ୍ରଷ୍ଟବ୍ୟ ।
ଶିକାନ୍ତଶେଷ ପ୍ରକାଶକ କ୍ଷେମରାଜ ଶ୍ରୀକୃଷ୍ଣ ଦାସ, ଭେଙ୍କଟେଶ୍ୱର ପ୍ରେସ, ବମ୍ବେ, ମହାରାଷ୍ଟ୍ର ।
(୯) South Indian Inscriptions, Vol-V., No. 1154, 1156 & 1214
୧୨୬୫ ଖ୍ରୀଷ୍ଟାବ୍ଦ ପୂର୍ବରୁ ପ୍ରଥମ ଭାନୁଦେବ ତାଙ୍କର ସେନାପତି ବଲ୍ଲଭ ସାହସ ମଲ୍ଲଙ୍କୁ ତତ୍କାଳୀନ ଖେମୁଣ୍ଡି ରାଜାଙ୍କ ବିରୁଦ୍ଧରେ ଯୁଦ୍ଧ କରିବାପାଇଁ ପଠାଇଥିଲେ ଏବଂ ଯୁଦ୍ଧରେ ବିଜୟୀ ହୋଇଥିଲେ । ସୀମାଞ୍ଚଳ ମନ୍ଦିର ଅଭିଲେଖରେ ଏହି ବିଷୟ ୨୦ଟି ଧାଡ଼ିରେ ଉଲ୍ଲେଖ କରାଯାଇଛି ।

a) South Indian Inscriptions-Vol. VI. No. 1213

b) Inscriptions of Orissa—Dr S. N. Rajaguru, Vol-V., Pt. I, No. 113
Published by Orissa State Museum, Bhubaneswar

c) A. R. No. 365, XLVI of 1899

(୧୦) Journal of Andhra Historical Research Society, Vol-II, Ptg. III & IV

(୧୧) ଗଞ୍ଜାମ ଗୁରୁଗୁଡ଼ - Madras Oriental Manuscript Library ରୁ ପ୍ରାପ୍ତ

(୧୨) T. J. Maltby - Ganjam District Manual, P.25, Published in Superintendent, Govt. Press, 1918.

(୧୩) ଲକ୍ଷ୍ମୀନାରାୟଣ ମିଶ୍ରଙ୍କ କଳିଙ୍ଗ-ଗଙ୍ଗବଂଶ ନାରସିଂହ ଦେବଙ୍କ ତାମ୍ର ଲିପି in J. A. H. R. S, Vol-XVIII.

(୧୪) ଘନଶ୍ୟାମ ଆର୍ଯ୍ୟ—ଓଡ଼ିଶାର ଇତିହାସ, ପ୍ରକାଶକ କଟକ ପ୍ରିଣ୍ଟିଙ୍ଗ କମ୍ପାନୀ, ୧୮୭୯ ପୃ. ୧୧୭

(୧୫) Census of India, Srikakulam District, 1981, Pt. XIII History Cha:ter, P. 8

# ଓଡ଼ିଶା ଗଠନରେ କୃଷ୍ଣଚନ୍ଦ୍ର ଗଜପତି-ଏକ ଚିନ୍ତନ

□ ନରସିଂହ ଦେଓ

□ ସମୟାନୁବର୍ତ୍ତିତା ତାଙ୍କର ମୂଳ ନିଷ୍ଠାମୟ ଆଚରଣରେ ଉଜ୍ଜ୍ୱଳ ପ୍ରତୀକ ଥିଲା । ସତ୍ୟନିଷ୍ଠା ଓ ଆତ୍ମମର୍ଯ୍ୟାଦା ଗଜପତିଙ୍କ ଜୀବନର ଶ୍ରେଷ୍ଠ ଉପାଦାନ ହୋଇଥିଲା । □

ଓଡ଼ିଶା ପ୍ରଦେଶ ଗଠନ ଆନ୍ଦୋଳନର ପ୍ରତିରୋଧ କରିବା ପାଇଁ ଉତ୍ତରରେ ବଙ୍ଗ, ଦକ୍ଷିଣରେ ତେଲଙ୍ଗ ଓ ପଶ୍ଚିମରେ ହିନ୍ଦୀ ଭାଷୀ ଯେଉଁ ଚକ୍ରାନ୍ତ କରିଥିଲେ ତାକୁ ପ୍ରତିହତ କରିବା ପାଇଁ କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ସ୍ୱତନ୍ତ୍ର ଓଡ଼ିଆ ଭାଷା ବିଭବ ପୂର୍ଣ୍ଣ ଅପୂର୍ବ ବର୍ଣ୍ଣନା ଚାତୁରୀ, କବିସୂର୍ଯ୍ୟ ବଳଦେବ ରଥଙ୍କ କବିତା କଲ୍ଲୋଳ ଓ ଗୋପାଳକୃଷ୍ଣଙ୍କ ଭକ୍ତିମୂଳକ ବିଭବଶାଳିନୀ ଖାଣ୍ଟି ଓଡ଼ିଆ କାବ୍ୟକଳା ଯଦି ନଥାନ୍ତା ତେବେ ଓଡ଼ିଆ ଭାଷାର ମୌଳିକ ପ୍ରମାଣ ପ୍ରଦର୍ଶନ କରିବାରେ ଘୋର ଅନ୍ତରାୟ ସୃଷ୍ଟି ହୋଇଥାନ୍ତା ଓ ଓଡ଼ିଆ ଭାଷା ଏକ ସ୍ୱତନ୍ତ୍ର ଭାଷା ବୋଲି ବିବେଚିତ କରାଇବା ପାଇଁ ସେକାଳର ନେତୃବର୍ଗ ଉପାୟ ପାଇ ପାରନ୍ତେ ନାହିଁ ।

ସେହିପରି ପାରଳାଖେମୁଣ୍ଡିର କେପଟେନ୍ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ବ୍ୟତୀତ ଓଡ଼ିଶାରେ ଆଉ କେହି ନଥିଲେ । ଯେ କି ଲଣ୍ଡନରେ ଅନୁଷ୍ଠିତ ୧୯୩୨ ର ଗୋଲ ଟେବୁଲ ବୈଠକ-ରେ ଯୋଗଦେଇ ପୂର୍ବନିର୍ଦ୍ଧାରିତ କାର୍ଯ୍ୟକ୍ରମକୁ ବଦଳାଇ ସେଥିରେ ଓଡ଼ିଶା ପ୍ରସଙ୍ଗ ଯୋଡ଼ିପାରି ପାରଳା ଓ ଜୟପୁରକୁ ଓଡ଼ିଶାରେ ମିଶାଇ ପାରିଥାନ୍ତେ । ତାଙ୍କପରି ଜଣେ କେହି ନେତା ଯଦି ଉତ୍ତର ଉପାନ୍ତ ଓ ପଶ୍ଚିମ ଉପାନ୍ତରେ ଜନ୍ମ ହୋଇଥାନ୍ତେ ତେବେ ଉତ୍ତର-ରେ ମେଦିନୀପୁର, ଖଡ଼ଗପୁର, ଝାଡ଼ଖଣ୍ଡ ଓ ଖରସୁଆଁ ଯାଇନଥାନ୍ତା କି ପଶ୍ଚିମରେ ବସ୍ତରାଜ୍ୟ ବି ଯାଇନଥାନ୍ତା । କୃଷ୍ଣଚନ୍ଦ୍ର ଗଜପତିଙ୍କର ଏତେ ଦୂର କର୍ମନିଷ୍ଠା ସତ୍ତ୍ୱେ ଦକ୍ଷିଣରୁ ମଞ୍ଜୁଷା, ଟେକଲି, ତରଳା ଚାଲିଗଲା ଏହା ଘୋର ପରିତାପର ବିଷୟ । ତାହା ଭଗବାନଙ୍କର ଇଚ୍ଛା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଖ୍ରୀ.୧୯୨୪ରେ ଫିଲିପ୍ ଡ଼ଫ, ୧୯୨୮ରେ ସାଇମନ କମିଶନ ଓ ୧୯୩୨ରେ ଓଡ଼େନଲ କମିଟିରେ ସଂପୃକ୍ତ ଥାଇ ମଧ୍ୟ ରାଜା କୃଷ୍ଣଚନ୍ଦ୍ରଙ୍କ ବ୍ୟକ୍ତିତ୍ୱକୁ ଅବମାନନା କରି ତତ୍କାଳୀନ ବ୍ରିଟିଶ ସରକାର ଅନ୍ୟ ଭାଷାଭାଷୀଙ୍କ ପ୍ରଭାବରେ ପାରଳା ଓ ଜୟପୁରକୁ ବାଦ ଦେଇ ଓଡ଼ିଶାଗଠନର ଶ୍ୱେତପତ୍ର ଘୋଷଣା ପ୍ରକାଶ କରିଥିଲେ । ଏହି ଘୋଷଣାରେ ବ୍ୟଥିତ ହୋଇ ମହାରାଜା କୃଷ୍ଣଚନ୍ଦ୍ର ଅନ୍ନଜଳ ତ୍ୟାଗ କରି ମୁମୂର୍ଷୁ ଅବସ୍ଥାରେ ପହଞ୍ଚିଲେ ।

ଠିକ୍ ଏହିକି ବେଳେ ଦିବାକର ପଟ୍ଟନାୟକ ଉଲଂଘନ ଅତ୍ୟାଚାର ବିରୁଦ୍ଧରେ ବ୍ୟକ୍ତିଗତ ସତ୍ୟାଗ୍ରହ କରି ରସୁଲକୋଣ୍ଡା (ବର୍ତ୍ତମାନର ଭଞ୍ଜନଗର) ଠାରେ ଅଦାଲତ ବିଚାରର ସମ୍ମୁଖୀନ ହୋଇ ବେଲାରି ଜେଲ୍‌ରେ ଲାଠିଚାର୍ଜ ଭୋଗ କରିବାପରେ

କାରାଗାର ମୁକ୍ତ ହୋଇ ଫେରିଥିଲେ । ସେତେବେଳେ ବିଲାତ ସରକାରଙ୍କ ଶ୍ୱେତପତ୍ର ଘୋଷଣା କ୍ରମେ ସେ ବିଚଳିତ ହୋଇ ଗଲେ । ଭାରତ ସ୍ୱାଧୀନତା ଆନ୍ଦୋଳନରେ ଉଦ୍ଭୁତ ଗାନ୍ଧିବାଦୀ ଭାବାବେଗ ହୃଦୟରେ ଓଡ଼ିଆତ୍ୱର ଅପୂର୍ବ ଜାତୀୟଭାବ ସହସା ଉଦୟହେଲା । ସେ ତତ୍‌କ୍ଷଣାତ କାଳ ବିଳମ୍ବ ନକରି ନୀଳକଣ୍ଠ ଗୋଦାବରୀଶ ଓ ବିଜୁପଟ୍ଟନାୟକଙ୍କ ପିତା ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କ ଗହଣରେ ଚିକିଟି ପହଞ୍ଚି ରାଜାଗୌରଚନ୍ଦ୍ରଙ୍କ ସହ ପରାମର୍ଶ କଲେ ଓ ଏମାନଙ୍କ ପ୍ରେରଣାରେ ରାଜା ଗୌରଚନ୍ଦ୍ର ବହୁତଥ୍ୟ ଓ ସତ୍ୟମୂଳକ ଅକାଟ୍ୟଯୁକ୍ତି ଧରି ଏକାକୀ ମହାରାଜାଙ୍କ ନିକଟରେ ଉପସ୍ଥିତ ହେଲେ । ସେ କି ପ୍ରେରଣା ଦେଲେ କେଜାଣି ଗଜପତି ଅନଶନ ତ୍ୟାଗକରି ସିହ ବିଷୟରେ ନବୋତ୍ସାହସହ ବିଲାତ ଯିବାପାଇଁ ପ୍ରସ୍ତୁତ ହେଲେ । ସେତିକି ବେଳେ ରାଜାଗୌରଚନ୍ଦ୍ର କହିଲେ- 'ସୁପ୍ରଭାତ ହୋଇ ଯାଇଛି ଆଉ ଭୟନାହିଁ' ଏହାରି ଫଳରେ ଗଜପତି ବିଲାତଯାଇ ସେଠାରେ ୩ମାସ ଅବସ୍ଥାନ କଲେ । ଏହି ସମୟରେ ଭୁବନାନନ୍ଦ ଦାସ ଓ ଦିବାକର ବାବୁଙ୍କୁ ତାର ଯୋଗେ ଜୟପୁର ଓ କୋରାପୁଟର ଓଡ଼ିଆ ଭାଷା ଜନସଂଖ୍ୟାର ପ୍ରମାଣ ମୂଳକ ତଥ୍ୟ ପଠାଇବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ବହୁଧନ ବ୍ୟୟକରି ଇଂରେଜୀ ଶାସନର ମୁଖ୍ୟଭୂମିକା ଗ୍ରହଣ କରିଥିବା ବ୍ୟକ୍ତିଙ୍କ ପଛା ସଭାସମିତି, ମଧ୍ୟାହ୍ନ ଓ ନୈଶ ଭୋଜନର ବ୍ୟବସ୍ଥାରେ ବ୍ୟସ୍ତ ରହିଲେ । ତଥାପି ଜୟପୁର ଓଡ଼ିଶାରେ ମିଶିବା ଘୋଷଣା ପ୍ରକାଶ-ପାଇଲା କିନ୍ତୁ ପାରଳା ମିଶିଲାନାହିଁ । ତା ପରେ ପରେ କୃଷ୍ଣଚନ୍ଦ୍ର ଗଜପତି ବଡ଼ଲାଟ ଲର୍ଡ ଓ୍ୱାଲିଂଟନଙ୍କ ଦ୍ୱାରା ଜଏଣ୍ଟ ପାର୍ଲିଆମେଣ୍ଟେରି କମିଟିର ସମ୍ମାନାସ୍ପଦ ସଭ୍ୟ ରୂପେ ମନୋନୀତ ହୋଇଥିଲେ । ମହାରାଜା ବିଷାଦ ବିବ୍ରତ ଓ ବ୍ୟଥିତ ହୋଇ ଲର୍ଡ଼ ଓ୍ୱାଲିଂଟନଙ୍କ ଶିମ୍ଳା ଅବସ୍ଥାନ କାଳରେ ତାଙ୍କସହ ଆଲୋଚନା କରି ପୁନର୍ବାର ଓଡ଼ିଶାର ସରହଦ ପରିବର୍ତ୍ତନକରି ପାରଳାକୁ ଓଡ଼ିଶାରେ ମିଶାଇ-ପାରିଥିଲେ । କୃଷ୍ଣଚନ୍ଦ୍ର ଗଜପତିଙ୍କ ଏହି ତ୍ୟାଗ, ଏକାଗ୍ରତା, ସହନ-ଶୀଳତା ଓ ଗାମ୍ଭୀର୍ଯ୍ୟ ଅନନ୍ୟ ସୁଲଭ ଥିଲା । ସେଥିପାଇଁ ସେ ଆଜି ନବ ଓଡ଼ିଶାର ପ୍ରତିଷ୍ଠାତା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ତା ୧.୪.୧୯୩୬ ରିଖରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା । ସାର୍‌ଜନ୍ ହବାକ୍ ଏହାର ପ୍ରଥମ ଲାଟ ହେଲେ । ବିଧାନ ସଭାର ୬୦ଟି ଆସନରୁ ନିର୍ବାଚନରେ କଂଗ୍ରେସ ୩୬ଟି ଓ ବିରୋଧୀଦଳ ୨୦ଟି ଆସନ ପାଇଲେ, ତଥାପି ରାଷ୍ଟ୍ରୀୟ ରାଜନୈତିକ ମର୍ଯ୍ୟାଦାର କ୍ଷୁର୍ଣ୍ଣତା ବୋଧକରି କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଢ଼ିବାକୁ ଅସ୍ୱୀକାର କଲା । ତେଣୁ କୃଷ୍ଣଚନ୍ଦ୍ର ଗଜପତିଙ୍କ ପ୍ରଧାନମନ୍ତ୍ରୀତ୍ୱରେ (ସେକାଳର ମୁଖ୍ୟ ମନ୍ତ୍ରୀଙ୍କୁ ପ୍ରଧାନମନ୍ତ୍ରୀ କୁହାଯାଏ) ଓଡ଼ିଶାର ପ୍ରଥମ ମନ୍ତ୍ରୀମଣ୍ଡଳ ଗଢ଼ାହେଲା । ସେଥିରେ ସହଯୋଗୀ ମନ୍ତ୍ରୀରୂପେ ଗୋଦାବରୀଶ ପଟ୍ଟନାୟକ ଓ ଲତିଫୁର ରହମାନ ରହିଲେ । ୩ ମାସପରେ ଏହି ମନ୍ତ୍ରୀମଣ୍ଡଳ ଲୋପ ହେଲା ଓ ବିଶ୍ୱନାଥ ଦାସ ପ୍ରଧାନମନ୍ତ୍ରୀ ହେଲେ ।

ଖ୍ରୀ.୧୯୩୯ ବର୍ଷରେ ୨ୟ ମହାସମର ଆରମ୍ଭ ହେଲା । ଉକ୍ତ ସମରରେ ସାହାଯ୍ୟ କରିବାପାଇଁ ବିଲାତ ସରକାର ଭାରତକୁ ଭର୍ତ୍ତି କରି ଦେଲେ । ସୁବାସ ବୋଷଙ୍କ କଳ୍ପନାନୁସାରେ ଆସାମ, ବଙ୍ଗଳା ଓ ଓଡ଼ିଶାରେ ମିଳିତ ମନ୍ତ୍ରୀମଣ୍ଡଳ ଗଢ଼ାଗଲେ ଭବିଷ୍ୟତରେ ସିଙ୍ଗାପୁରରୁ 'ଭାରତୀୟ ଜାତୀୟ ବାହିନୀ'ର ରଣ ଅଭିଯାନ ସଫଳ ହେବା ଆଶାରେ ଆଶାତୀତ ପ୍ରେରଣା ପାଇ ଦିବାକର ପଟ୍ଟନାୟକ ଥରେ ରାତି ୧୨ଘଣ୍ଟା ବେଳେ ପାରଳା ପହଞ୍ଚିଲେ । ସେତେବେଳକୁ ବିଶ୍ୱନାଥ ଦାସ ମନ୍ତ୍ରୀମଣ୍ଡଳ ବିଲାତ ସରକାରଙ୍କୁ ଅସହଯୋଗ କରି ଇସ୍ତଫା ଦେଇଥିଲେ । ସେତେବେଳେ ରାଜନୈତିକ ଦୃଷ୍ଟିକୋଣରୁ ପାରଳା ଗଜପତି ନିର୍ଦ୍ଦିଷ୍ଟ କେତେ ଜଣ ନେତୃମଣ୍ଡଳୀକୁ ଯେକୌଣସି ସମୟରେ ସାକ୍ଷାତ କରିବା ପାଇଁ ସୁବିଧା ଓ ଅନୁମତି ଦେଇଥିଲେ । ଦିବାକର ବାବୁ ନିଶାର୍ଦ୍ଧରେ ପହଞ୍ଚି ଖବର ଦେବାଦ୍ୱାରା ସେ ନିଦ୍ରୋତ୍ଥିତ ସିଂହପରି ତେଜିଉଠି ନିକଟକୁ ଡକାଇ ନେଲେ । ସେତେବେଳେ ଦିବାକର ବାବୁ ଗଜପତିଙ୍କ ନିକଟରେ ନାଟକୀୟ ଭଙ୍ଗୀରେ ତତ୍କାଳୀନ ଓଡ଼ିଶାର ଦୁର୍ଦ୍ଦଶା ବର୍ଣ୍ଣନା କରି ମହାରାଜାଙ୍କ ପ୍ରଧାନମନ୍ତ୍ରୀତ୍ୱରେ ଏକ ମିଳିତ ମନ୍ତ୍ରୀମଣ୍ଡଳ ଗଠନପାଇଁ ବିନୀତ ଅନୁରୋଧ କଲେ ଓ ଏହାର ବ୍ୟତିକ୍ରମରେ ସୁବାସବୋଷଙ୍କ ପରିକଳ୍ପନା ଓ ଭାରତର ସ୍ୱାଧୀନତାର ଭବିଷ୍ୟତ ଦୁର୍ବିପାକ ବର୍ଣ୍ଣନା କଲେ । ମହାରାଜା ହଠାତ୍ ଉଠିପଡ଼ି ଦିବାକର ବାବୁଙ୍କୁ କୁଣ୍ଢାଇପକାଇ କହିଲେ ବାବୁ ! ଚିକିଟି ମାଟିରେ ଜନ୍ମହୋଇ ତୁମେ ପ୍ରକୃତ ଦିବାକର ତୁଲ୍ୟ ମୋର ପଥର କର୍କଶ ହୃଦୟକୁ ତରଳାଇ ଦେଲ ଓ ସେହି ମାଟିର ସନ୍ତାନ ଗୌରଚନ୍ଦ୍ର ମଧ୍ୟ ତା'ର ସ୍ନେହ ଓ ଭକ୍ତିରେ ମୋତେ ବଶୀଭୂତ କରିଦେଇଥିଲା । ତୁମେମାନେ କି ଉପାଦାନରେ ଗଢ଼ା କେଜାଣି,' ସେ ମୁହୂର୍ତ୍ତରେ ହସିହସି ଦିବାକର ବାବୁ କହିଥିଲେ 'ସୁପ୍ରଭାତ ହୋଇଯାଇଛି ଆଉ ଭୟନାହିଁ । ପରେ ପରେ ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ ମହାରାଜାଙ୍କ ନିକଟରେ ଉପସ୍ଥିତ ହୋଇ ମିଳିତ ମନ୍ତ୍ରୀମଣ୍ଡଳର ରୂପରେଖ ଗଢ଼ିଲେ ।

୧୯୪୦ ରେ ପାରଳାମନ୍ତ୍ରୀମଣ୍ଡଳ ଗଢ଼ାହେଲା । ଏଥିରେ ପାରଳାଗଜପତି କୃଷ୍ଣଚନ୍ଦ୍ର ପ୍ରଧାନ ମନ୍ତ୍ରୀ, ଗୋଦାବରୀଶ ମିଶ୍ର ଓ

ସୋବହାନଖାଁ ସହଯୋଗୀମନ୍ତ୍ରୀ ରହିଲେ, ଏତିକିବେଳେ ଉତ୍କଳ ବିଶ୍ୱବିଦ୍ୟାଳୟ ଓ କଟକ ଶ୍ରୀରାମଚନ୍ଦ୍ର ଭଞ୍ଜ ଚିକିତ୍ସାମହାବିଦ୍ୟାଳୟ ସ୍ଥାପନ ହେଲା ।

ତାଙ୍କର ଦେବପୁରୁଷ ରାଜଭ୍ରାତା କୁମାର ପଦ୍ମନାଭଦେଓ (ଚନ୍ଦ୍ରମହାରାଜା) ଓଡ଼ିଆଙ୍କ ପାଇଁ ପୃଥକ ରାଜ୍ୟ ଦାବୀକରି ଊନବିଂଶ ଶତାବ୍ଦୀରେ ଉତ୍କଳ ହିତୈଷିଣୀ ସମାଜ ଗଠନ କରି- ଥିଲେ ଓ ରମ୍ଭାରେ ଅନୁଷ୍ଠିତ ବୈଠକ ପାଇଁ ଶ୍ୟାମସୁନ୍ଦର ରାଜ- ଗୁରୁ (ଓଡ଼ିଶାର ପ୍ରଥମଗ୍ରାଜୁଏଟ୍)ଙ୍କୁ ନିଜଅଞ୍ଚଳର ପ୍ରତିନିଧି ରୂପେ ପଠାଇଥିଲେ ।

ପରବର୍ତ୍ତୀକାଳରେ ମହାରାଜାଙ୍କ ଗୃହଶିକ୍ଷକ ରୂପେ ସେହି ଶ୍ୟାମ ସୁନ୍ଦର ରାଜଗୁରୁ ନିଯୁକ୍ତି ପାଇଥିଲେ । ତାଙ୍କର ଶିକ୍ଷକତା ଫଳେ ଓଡ଼ିଶା ଦେଶ ଓ ଓଡ଼ିଆ ଭାଷା ପ୍ରୀତି ମହାରାଜାଙ୍କ ହୃଦୟରେ ଦ୍ୱିଗୁଣିତ ହୋଇଥିଲା । ତାଙ୍କ ପିତା ଗୌରଚନ୍ଦ୍ର ଗଜପତି ଧ୍ରୁବ, 'ପଦ୍ମାବତୀ ସ୍ୱୟଂମ୍ବର,' 'କଂଶଦର୍ପଦଳନ, ଦ୍ରୋବତିହରଣ ଲେଖି ଓଡ଼ିଆଭାଷାର ମହତ୍ତ୍ୱ ବଢ଼ାଇ ଦେଇଥିଲେ । ତାଙ୍କ ସହ ଯୋଗ ଦେଇଥିଲେ ଭକ୍ତକବି ଗୋପାଳକୃଷ୍ଣ, ଆପଣ୍ଣା ପରିଚ୍ଛା, ଗୋପିନାଥନନ୍ଦ, ରଘୁନାଥ ପରିଚ୍ଛା, ସୀମାଦ୍ରି ପଟ୍ଟନାୟକ ମହାରାଜା କୃଷ୍ଣଚନ୍ଦ୍ରଙ୍କ ଅନ୍ୟତମ ଗୃହ- ଶିକ୍ଷକ ଅପର୍ଣ୍ଣା 'ନବଜୀବନ', 'ଛନ୍ଦସାର', ପଦ୍ମନାଭଜନ୍ମ ଇତ୍ୟାଦି ରଚନା କରିଥିଲେ । ପାରଳାରେହିଁ ମହାରାଜାଙ୍କ ପ୍ରାଥମିକ ଓ ମାଧ୍ୟମିକ ବିଦ୍ୟାଶିକ୍ଷା ସମାପନ ହୋଇଥିଲା । ତାପରେ କଲେଜ ଶିକ୍ଷାପାଇଁ ସେ ମାନ୍ଦ୍ରାଜ ନ୍ୟୁଇଂଟନ ଆବାସିକ ମହାବିଦ୍ୟାଳୟରେ ଯୋଗଦେଇଥିଲେ ।

ମହାରାଜା କୃଷ୍ଣଚନ୍ଦ୍ରଙ୍କ କାନ୍ଧକୁ କାନ୍ଧ ମିଳାଇ ଓଡ଼ିଶା ପ୍ରଦେଶ ଗଠନର ଅନ୍ୟତମ ନେତୃବୃନ୍ଦ ତଥା - ମନସ୍ୱୀମଧୁସୂଦନ, ଲୋକବନ୍ଧୁ ଗୋପବନ୍ଧୁ, ମନସ୍ୱୀ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ ପ୍ରଭୃତି ଜନନାୟକ ଗଣ ସ୍ୱାର୍ଥତ୍ୟାଗର ଚରମ ଉଦାହରଣ ଦେଖାଇଛନ୍ତି । ଓଡ଼ିଶାର ପ୍ରଥମ ଓଡ଼ିଆ ଦୈନିକ 'ଦୈନିକ ଆଶା'ର ପ୍ରତିଷ୍ଠାତା ଶଶିଭୂଷଣ ରଥଙ୍କ ବଳିଷ୍ଠ ସମ୍ପାଦନାରେ ଓଡ଼ିଶା ଗଠନ ପାଇଁ ବହୁ ଗଠନ ମୂଳକ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଥିଲା । ୧୯୩୨ ରେ ବିଲାତ ସରକାର ଓଡ଼ିଶା ଗଠନ ପାଇଁ ଓଡ଼ନେଲ କମିଟି ନିଯୁକ୍ତ କରିଥିଲେ । ସେହି କମିଟିକୁ ତଥ୍ୟ ଯୋଗାଇବାପାଇଁ "ଉତ୍କଳ ସମ୍ମିଳନୀ" ତରଫରୁ ରାଜା ଗୌରଚନ୍ଦ୍ର ଓ ଦିଗମ୍ବର ରଥ ମନୋନୀତ ହୋଇଥିଲେ ।

ମହାରାଜା କୃଷ୍ଣଚନ୍ଦ୍ର ମାନ୍ଦ୍ରାଜର ନ୍ୟୁଇଂଟନ ମହାବିଦ୍ୟାଳୟରେ ଅଧ୍ୟୟନ କଲାବେଳେ ସେଠାରେ ଅନ୍ୟାନ୍ୟ ଓଡ଼ିଆ ରାଜକୁମାର ଗଣ 'ହରିଶ୍ଚନ୍ଦ୍ର' ନାଟକ ଅଭିନୟ କରିଥିଲେ ଓ କୃଷ୍ଣଚନ୍ଦ୍ର ସେହି ନାଟକରେ ବିଶ୍ୱାମିତ୍ର ଭୂମିକାରେ ଅବତୀର୍ଣ୍ଣ ହୋଇ କୃତିତ୍ୱ ସହ ଅଭିନୟ କରିଥିଲେ । ସେହିଦିନରୁ ତାଙ୍କ ହୃଦୟରେ ନାଟକ ପ୍ରୀତି ଅଙ୍କୁରିତ ହୋଇଥିଲା ଓ ସେ ନିଜ ପିତୃବ୍ୟଙ୍କ ପ୍ରତିଷ୍ଠିତ ଗୌରଚନ୍ଦ୍ର ରଙ୍ଗାଳୟକୁ ଜୀବନ୍ୟାସ ଦେଇଥିଲେ । ଗୌରଚନ୍ଦ୍ର ଗଜପତିଙ୍କ ଅକାଳ ବିୟୋଗ ବେଳେ କୃଷ୍ଣଚନ୍ଦ୍ର ନାବାଳକ ଥିଲେ । ଏଣୁ ତାଙ୍କ ଜମିଦାରୀ 'କୋର୍ଟ-ଅଫ୍ ୱାର୍ଡ଼ସ' ପରିଚାଳନାଧୀନ ହେଲା ।

ସେ ୧୯୧୩ରେ ରାଜଗାଦି ପାଇଲେ । ତଦବଧି ତାଙ୍କ ପିତାଙ୍କ ଦ୍ୱାରା ରେଙ୍ଗୁନ୍ ବେଙ୍କ୍‌ରେ ଗଚ୍ଛିତ ଏକ କୋଟିଟଙ୍କା ଦେଶହିତରେ ବ୍ୟୟକରିବା ପାଇଁ ପ୍ରତିଜ୍ଞା କରି- ଥିଲେ । ୧୯୧୪ରେ ତତ୍‌କାଳୀନ ନେତୃବୃନ୍ଦଙ୍କ ଦ୍ୱାରା "ଉତ୍କଳ ସମ୍ମିଳନୀ" ର ୧୦ମ ଅଧିବେଶନ ପାରଳାଖେମୁଣ୍ଡିରେ ଅନୁଷ୍ଠିତ ହୋଇଥିଲା । କୁଳବୃଦ୍ଧ ମଧୁସୂଦନ, ଉତ୍କଳମଣି ଗୋପବନ୍ଧୁ, ମନସ୍ୱୀ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ, କନିକା, ମଧୁପୁର, ଧରାକୋଟ, ଆଠଗଡ଼ ର ରାଜାମାନଙ୍କସହ ଉତ୍କଳର ବରେଣ୍ୟ କବି, ଲେଖକ, ସାମ୍ବାଦିକ, ରାଜନୈତିକ ନେତାଗଣ ବହୁସଂଖ୍ୟାରେ ଯୋଗଦେଇଥିଲେ । ଏ ସମସ୍ତଙ୍କର ଆବାସ, ଅଶନ, ବ୍ୟସନ ସବୁଥିର ଭାର କୃଷ୍ଣଚନ୍ଦ୍ର ଗଜପତିହିଁ ବହନ କରିଥିଲେ । ସେହି ଅଧିବେଶନରେ ମନସ୍ୱୀମଧୁସୂଦନଙ୍କ ପ୍ରଦତ୍ତ ଭାଷଣ ମହାରାଜାଙ୍କ ମନକୁ ଏତେଦୂର ଅନୁପ୍ରାଣିତ କରିପାରିଲାଯେ- ସେ ସେହି ଦିନୁ ଦେଶସେବା ଦୀକ୍ଷା ଗ୍ରହଣ କଲେ । ଏହି ଦେଶସେବା ବ୍ରତରେ ସେ ନିଜକୁ ସାମିଲ କରିବାପାଇଁ ଜୀବନର କେତେଗୋଟି ଅତି- ମହତ୍ତ୍ୱପୂର୍ଣ୍ଣ ଦୀକ୍ଷା ଗ୍ରହଣ କରିଥିଲେ । ସେ ଜୀବନ ସାରା ମାଦକଦ୍ରବ୍ୟ ପରିହାର କରିଥିଲେ । ଏପରିକି ସିଗାରେଟ୍ ଓ ପାନ ପର୍ଯ୍ୟନ୍ତ ମଧ୍ୟ ସ୍ପର୍ଶ କରିନାହାନ୍ତି । ରାଜବୈଭବ ଓ ଅତୁଳନୀୟ ଐଶ୍ୱର୍ଯ୍ୟ ଭିତରେରହି ସେ ବ୍ରାହ୍ମମୁହୂର୍ତ୍ତରୁ ଶଯ୍ୟା ତ୍ୟାଗ, ପଠନ ଓ ମନନ, କୃଷି ଓ ଗୋପାଳନ, ଦେବବ୍ରାହ୍ମଣ ସେବାରେ ନିରନ୍ତର ନିଜକୁ ମଜାଇ ରଖୁଥିଲେ । ସମୟାନୁବର୍ତ୍ତିତା ତାଙ୍କର ମୂଳ ନିଷ୍ଠାମୟ ଆଚରଣର ଉଜ୍ଜ୍ୱଳ ପ୍ରତୀକ ଥିଲା । ସତ୍ୟନିଷ୍ଠା ଓ ଆତ୍ମମର୍ଯ୍ୟାଦା ଗଜପତିଙ୍କ ଜୀବନର ଶ୍ରେଷ୍ଠ ଉପାଦାନ ହୋଇଥିଲା । ଯେକୌଣସି ବ୍ୟକ୍ତି, ଅଫିସର, ଓ ଉଚ୍ଚରାଜନୈତିକ ନେତାଙ୍କସହ ସାକ୍ଷାତ ଓ ଆଲାପାଲୋଚନା ରେ ଏହା ଯଥାରୀତି ପାଳନ କରୁଥିଲେ ଓ ନିର୍ଦ୍ଦିଷ୍ଟ ସମୟର ବ୍ୟତିକ୍ରମକୁ ଆଦୌ ପ୍ରଶ୍ରୟ ଦେଉନଥିଲେ । ତାଙ୍କ

ନିକଟରେ ସମସ୍ତର ମୂଲ୍ୟ ଅର୍ଜି ଗରୀୟାନ ବିବେଚିତ ହେଉଥିଲି ।

ପୁରୀ ରାଧାକାନ୍ତମଠର ତତ୍କାଳୀନ ମହନ୍ତ ମହାରାଜ ସ୍ୱର୍ଗୀୟ ଶ୍ରୀ ରାଧାକୃଷ୍ଣ ଦାସ ଗୋସ୍ୱାମୀ ଥିଲେ ମହାରାଜାଙ୍କ ଦୀକ୍ଷାଗୁରୁ ଓ ସ୍ୱନାମଧନ୍ୟ ଐତିହାସିକ ଓ ଭାଷାବିତ୍ ଗବେଷକ ଓ ସତ୍ୟନାରାୟଣ ରାଜଗୁରୁଙ୍କ ପିତାମହ ପଣ୍ଡିତ ମଧୁସୂଦନ ରାଜଗୁରୁଙ୍କୁ ସେ ଅତ୍ୟନ୍ତ ଭକ୍ତି ସହ କୁଳପୁରୋହିତ ରୂପେ ସମ୍ମାନିତ କରିଥିଲେ । ଏହି ମଧୁସୂଦନ ରାଜଗୁରୁ ହିଁ ରାଜାଙ୍କ କୁଳଦେବୀ 'ମାଣିକେଶ୍ୱରୀ' ପୂଜାର୍ଚ୍ଚନାରେ ନିଯୁକ୍ତ ଥିଲେ ଓ ତାନ୍ତ୍ରିକ ମତରେ ବଳିପୂଜା ଇତ୍ୟାଦି କରୁଥିଲେ ।

'ଉତ୍କଳ ସମ୍ମିଳନୀ' ଅନୁଷ୍ଠିତ ହେବା ଦିନଠାରୁ ମହାରାଜାଙ୍କ ଓଡ଼ିଆ ପ୍ରୀତି ବୃଦ୍ଧି ହେଲି ଓ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ ରେ ମହାରାଜ ସକ୍ରିୟ ଅଂଶ ଗ୍ରହଣକଲେ । ଏହା ଦେଖି ଦ୍ୱିତୀୟ ସଂଖ୍ୟା-ଗରିଷ୍ଠ ଭାଷାଭାଷୀଙ୍କ ମନରେ ଦ୍ୱେଷ ଜନ୍ମିଲା । ସେମାନଙ୍କ ଚକ୍ରାନ୍ତରେ ଯୁବକ ମହାରାଜା ପ୍ରଭାବିତ ହୋଇ 'ବ୍ରାହ୍ମଧର୍ମ' ଗ୍ରହଣକଲେ । 'ବ୍ରାହ୍ମଧର୍ମ'ରେ ପ୍ରଭାବିତ ହେବାଦ୍ୱାରା ଦେବୀଙ୍କ ପର୍ବ ବେଳେ ସକଳ ପ୍ରକାର ବଳିଦାନ ନିଷିଦ୍ଧ ହେଲି ଓ ଦେବୀଙ୍କୁ ଫଳମୂଳ-ମିଷ୍ଟାନ୍ନ ଭୋଗରେ ତୃପ୍ତକରିବା ଆୟୋଜନ ହେଲା । ଏହା ଦେଖି ମଧୁସୂଦନ ରାଜଗୁରୁ କୌଣସି ଦୈବୀ ବିପତ୍ତିର ଆଶଙ୍କା କଲେ ଓ କୌଣସି ଅଘଟଣ ପ୍ରତିଫଳକୁ ସହ୍ୟକରିବା ସାହସ ହରାଇଲେ । ଏଣୁ ସବୁଥିରୁ ରକ୍ଷାପାଇବାକୁ ସେ ବୃନ୍ଦାବନ ଚାଲିଗଲେ । ଏଘଟଣା ଦେଖି ରାଜମାତା ବି ବିଚଳିତ ହେଲେ ।

ଦିନେ ଦେବୀଙ୍କ ପୂଜାପର୍ବର ମହାସପ୍ତମୀ ଅତିବାହିତ ହୋଇ ମହାଷ୍ଟମୀ ପ୍ରବେଶ କରନ୍ତେ ସେହି ରାତି ରାଜା ଓ ରାଣୀ ପାଖାପାଖି ଦୁଇଟି ପଲଙ୍କରେ ନିଦ୍ରାରତ ଶୟନକକ୍ଷର ସ୍ତିମିତ ଆଲୋକରେ ଦେଖାଗଲା ଗୋଟିଏ କୋଣରୁ ଏକ ଉଗ୍ର ନାରୀମୂର୍ତ୍ତି ମୁକୁଳିତ କେଶା, ବିସ୍ଫାରିତ ନୟନା, ରାଗ କର୍କଶିତ ରୂପଧାରିଣ କରି ରାଜାଙ୍କ ପଲଙ୍କ ଆଗେ ଧାଇଁବା ଓ ସେହି ଭୀକର ନାରୀମୂର୍ତ୍ତିର ପୃଷ୍ଠରେ ଜଣେ ଚଣ୍ଡାଳ କ୍ରୁଦ୍ଧ କଣ୍ଠରେ ବିନୀତ ମିନତି କରି-କରି ଗୋଡ଼ାଇଛନ୍ତି । ସେହି ଉଗ୍ରମୂର୍ତ୍ତି ହଠାତ ରାଜାଙ୍କର କେଶଧରି ପଲଙ୍କ ଉପରେ ବସାଇଦେଲେ ଓ ତାହାଙ୍କ ଗଣ୍ଡଦେଶରେ ଏକ ବଳିଷ୍ଠ ଚପଟାଘାତକରି କହିଲେ, ପାମର ମୋର ପୂଜାର୍ଚ୍ଚନାରେ ଅନ୍ତରାୟ କରିପାରୁ ତୁ ! ରାଜା ହଠାତ ଉଠିପଡ଼ି ଗାଲ ଆଉଁଶିଲେ । ତାଙ୍କ ଗଣ୍ଡଦେଶ ଏଣୁଅ ପିଷ୍ଟିବ ପରି ଉଛୁଳି ଯାଇଛି ।

ସେ ସଙ୍ଗେ ସଙ୍ଗେ ରାଣୀଙ୍କୁ ଉଠାଇ ସବୁକଥା କହିଲେ ଓ ବଡ଼ଭାପରି ପଡ଼ି ଅଛନ୍ତି । ଦୁହେଁ ମିଶି ରାଜମାତାଙ୍କୁ ଯାଇ ଉଠାଇ ସବୁକଥା କହିଲେ । ମାତା ପୁଅ ବୋହୂଙ୍କୁ ଆଲିଙ୍ଗନ କରି ଭୋ--ଭୋ ଚିତ୍କାର କଲେ । ରାତି ପାହିଲା ଷଣି ଦେବୀଙ୍କ ସମସ୍ତ ପୂର୍ବ ପୂଜା ବିଧିର ଆୟୋଜନ ହେଲା ଓ ବୃନ୍ଦାବନବାସୀ ମଧୁସୂଦନ ରାଜ-ଗୁରୁଙ୍କୁ ଡାକିବା ପାଇଁ ପୃଥକ ଦୂତ ପ୍ରେରିତ ହେଲା । ରାଜଗୁରୁ ପହଞ୍ଚି ପୂର୍ବ ପ୍ରଥାନୁସାରେ ପୂଜାବିଧି ପ୍ରଚଳିତ କଲେ । ଏଥିରୁ ମହାରାଜାଙ୍କର ଦେବୀ ଭକ୍ତି ପ୍ରକଟିତ ହୁଏ ।

ଦେଶଭକ୍ତି ଓ ଦେବବ୍ରାହ୍ମଣ ପୂଜା ସାଙ୍ଗକୁ ସମସ୍ୟାନୁବର୍ତ୍ତିତା ପୂର୍ଣ୍ଣ ଉତ୍କଳ ଚରିତ୍ର ବଳରେ ସେ ଅଳ୍ପ ସମସ୍ତଙ୍କ ଉର୍ଦ୍ଧ୍ୱରେ ପୂଜାପାଇବା ଯୋଗ୍ୟ ବିବେଚିତ ହୋଇଛନ୍ତି । ଏହା ସାଙ୍ଗକୁ ତାହାଙ୍କର ସାହିତ୍ୟ ପ୍ରୀତି ଅତୁଳନୀୟଥିଲି । 'ଗଜପତି ପ୍ରେସ୍'ସ୍ଥାପନ-କରି ସେ ରାଜକବି ଜଗନ୍ନାଥ ନାରାୟଣ ଦେବଙ୍କ ରଚିତ 'ବୃନ୍ଦାବନ' ବିହାର ପ୍ରଥମେ ପ୍ରକାଶ କଲେ । ତାପରେ 'ଗୋପାଳକୃଷ୍ଣ ପଦ୍ୟାବଳୀ' ଓ ଗୌରହରି ପରିଚ୍ଛାଙ୍କ ରଚିତ ଭକ୍ତି ସଙ୍ଗୀତ ଗୁଡ଼ିକ ସେହି ଛାପାଖାନାରୁ ପ୍ରକାଶ ପାଇଲା । ଗୋପାଳକୃଷ୍ଣ ରଚିତ କୃଷ୍ଣ-ମହାତ୍ମ୍ୟ ବର୍ଣ୍ଣିତ ଲଳିତ କବିତାବଳୀ ତାହାଙ୍କମନକୁ ଏପରି ମୁଗ୍ଧ କରିଥିଲା ଯେ ସେ ନିରୋଳା ସମୟ ପାଇଲେ ଗାଇ ଉଠୁଥିଲେ-ରସମାନ ରାଧିକେଶ ସାର ରସ କଥାରେ ।

ସେ ଗୋଟିଏ ସଙ୍ଗୀତ ମଣ୍ଡଳୀ ଗଢି ସଦା ସଙ୍ଗୀତ ସମାରୋହ ମାନ ଅନୁଷ୍ଠିତ କରାଉଥିଲେ । ବୃନ୍ଦାବନ ପାତ୍ରଙ୍କୁ ବୀଣାବାଦକ ରଙ୍ଗନାଇଡ଼ୁଙ୍କୁ ତବଲା ବାଦକ, ଧାଇ ଆପନ୍ନା ପାଣିଗ୍ରାହୀ (ଅନ୍ଧ ଆପନ୍ନା) ଙ୍କ କଣ୍ଠରେ ମଧୁର ଗୋପାଳକୃଷ୍ଣ ଗୀତ ଲହରରେ ମାଧୁର୍ଯ୍ୟ ଉପଭୋଗ କରି ସେ ନିଜକୁ କୃତାର୍ଥ ମଣୁଥିଲେ ।

ଏପରି ଗୋଟିଏ ମହାନ ବ୍ୟକ୍ତିତ୍ୱ ଗଢିବାରେ ବଂଶ, ଜାତି ଓ ସାମାଜିକ ପରମ୍ପରା ଗତ ଐତିହ୍ୟର ପରିବେଶ ଯଥେଷ୍ଟ କାର୍ଯ୍ୟକରିଥାଏ । ମହାରାଜା କୃଷ୍ଣଚନ୍ଦ୍ରଙ୍କ ଜୀବନରେ ସେପରିରୁ ଉଚ୍ଚ ପରମ୍ପରା ଅନୁଭୂତ ହୁଏ । ଧନାଢ୍ୟ ରାଜପରିବାର, ଶ୍ରେଷ୍ଠ ଗଙ୍ଗବଂଶ, ଶ୍ରେଷ୍ଠ ବାଲ୍ୟଗୁରୁ ଓ ଉପଯୁକ୍ତ ପିତାମାତାଙ୍କର ସନ୍ତାନ ରୂପେ ମହାରାଜା-କୃଷ୍ଣଚନ୍ଦ୍ର ଏକ ଅନିନ୍ଦ୍ୟ ସୁନ୍ଦର ପରିବେଶ ଲାଭକରିଥିଲେ । କିନ୍ତୁ ଭାଗ୍ୟର ବିପର୍ଯ୍ୟୟରେ ସେ ଯୁବକାବସ୍ଥାରେ ପତ୍ନୀଙ୍କୁ ହରାଇ ଆଜୀବନ ଅବିବାହିତ ରହିଥିଲେ । ନିଜର ଜ୍ୟେଷ୍ଠ ପୁତ୍ର ଆତ୍ମହତ୍ୟାକଲେ । ଏସବୁ ପାରିବାରିକ ଜୀବନର ଅଶାନ୍ତି ଓ ବିଶୃଙ୍ଖଳା ମଧ୍ୟରେ ବି ସେ ସ୍ଥିତପ୍ରଜ୍ଞ ଥିଲେ ।

ତାହାଙ୍କର ଜନ୍ମ ତା ୨୬-୪-୧୮୯୨ ଅର୍ଥାତ ଶ ୧୮୧୪ ର ବୈଶାଖ ଅମାବାସ୍ୟାରେ ଧନୁଲଗ୍ନ ଓ ଅଶ୍ୱିନୀ ନକ୍ଷତ୍ରରେ ହୋଇଥିଲା । ସେତେବେଳକୁ ମେଷ ରାଶିରେ ରବି, ବୁଧ, ଚନ୍ଦ୍ର ଓ ରାହୁ ଥିଲେ । ମିଥୁନ ରାଶିରେ ଶୁକ୍ର, କନ୍ୟା ରାଶିରେ ଶନି, ତୁଲା ରାଶିରେ କେତୁ, ମକର ରାଶିରେ ମଙ୍ଗଳ ଓ ମୀନ ରାଶିରେ ଦେବଗୁରୁ ବୃହସ୍ପତିଙ୍କର ଅବସ୍ଥାନ ହୋଇଥିଲା । ଜନ୍ମ ସମୟକୁ କେରଳ ମତାନୁସାରେ କେତୁ ମହାଦଶାରୁ ବାକିଥିଲା ବ ୦-୧ ୧ ଦିନମାହ ଧନୁଲଗ୍ନପାଇଁ ମେଷ ରାଶିରେ କେନ୍ଦ୍ର କୋଣାଧିପର ମିଳନକୁ ବୁଧାଦିତ୍ୟ ଯୋଗ କୁହାଯାଏ । ତତ୍‌ସଙ୍ଗେସଙ୍ଗେ ସ୍ୱକ୍ଷେତ୍ର ଓ କେନ୍ଦ୍ରଗତ ବୃହସ୍ପତିଙ୍କ ଯୋଗୁ ହଂସଯୋଗ ଓ ଉକ୍ତ ଯୋଗରେ ସମଷ୍ଟି ଦ୍ୱାରା କୋଷ୍ଠି ଅତ୍ୟନ୍ତ ସମୃଦ୍ଧଶାଳୀ । ଶୁକ୍ର ଦଶମ କେନ୍ଦ୍ରରେ, ବୁଧ ତ୍ରିକୋଣ ଗତ ଓ ବୃହସ୍ପତି କେନ୍ଦ୍ରଗତ ହୋଇ ପୂର୍ଣ୍ଣ ବଳବାନ ୨୭-୫-୧୯୧୨ ବେଳକୁ ଶୁକ୍ର ମହାଦଶା ଶେଷହୋଇ ରବି ମହାଦଶା ଆରମ୍ଭ ହୋଇଥିଲା । ରବି ଭାଗ୍ୟାଧିପ ପଞ୍ଚମ ଭାଗବନ୍ତ ହୋଇ କେନ୍ଦ୍ରାଧିପ ବୁଧଙ୍କ ସହ ରହି ପ୍ରବଳ ରାଜଯୋଗ ସୃଷ୍ଟି କରିଥିଲା । ଏଣୁ ୧୯୧୩ରେ ଖରସୁଆ ରାଜକନ୍ୟାଙ୍କ ସହ ତାଙ୍କର ବିବାହ ଓ ସିଂହାସନାରୋହଣ ବ୍ରିଟିଶ ସେନାଭୁକ୍ତ ଓ ଯୁଦ୍ଧପାଣ୍ଠିକୁ ଲକ୍ଷାଧିକ ଟଙ୍କା ଦାନ, ପାରଳାରେ ଉତ୍କଳ ସମ୍ମିଳନୀ ହୋଇଥିଲା । ରବି ମହାଦଶା ତା ୨୨-୫-୧୯୨୮ ବେଳକୁ ଶେଷ ଚନ୍ଦ୍ର ମହାଦଶା ତା୨୭.୫.୧୯୨୮ ବେଳକୁ ଶେଷହୋଇ ମଙ୍ଗଳ ମହାଦଶା ଆରମ୍ଭ ଓ ପଞ୍ଚମାଧିପ ମଙ୍ଗଳ ମକର ରାଶିରେ ତୁଙ୍ଗୀ ହୋଇ ପୂର୍ଣ୍ଣ ବଳବାନ ହୋଇଥିବାରୁ ୧୯୩୨ ନଭେମ୍ବରରେ ଗୋଲଟେବଲ ବୈଠକରେ ସେ ଜୟଯୁକ୍ତ ହେଲେ । ୨୭.୫ ୧୯୩୬ ବେଳକୁ ମଙ୍ଗଳ ମହାଦଶା ଶେଷହୋଇ ରାହୁ ମହାଦଶା ଆରମ୍ଭ, ରାହୁ ପଞ୍ଚମ ଭାଗରେ ଯୋଗକାରକ ଗ୍ରହ ସହ ସଯୋଗ ହେବାରୁ ୧୯୩୭ ଓ ୧୯୪୨ରେ ଓଡ଼ିଶାର ପ୍ରଧାନମନ୍ତ୍ରୀତ୍ୱ ଲାଭକଲେ ୧୯୪୩ରେ ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ଥାପନକରି ପାରିଥିଲେ । ୧୯୪୬ରେ କେ.ସି.ଆଇ.ଇ ଓ ଏଲ୍.ଏଲ୍.ଡ଼ି ଉପାଧି ଲାଭକରିଥିଲେ । ଲଗ୍ନାଧିପ କେନ୍ଦ୍ରଗତ ହୋଇ ବଳବାନ ହେବାରୁ ସେ ଦୀର୍ଘଜୀବନ ଲାଭକରିଥିଲେ । ଏହା ଜଣେ ବିଖ୍ୟାତ ଜ୍ୟୋତିଷଙ୍କ ମତ ।

ଆଜି ତାଙ୍କର ଶତବାର୍ଷିକୀ ଜନ୍ମୋତ୍ସବ ମହାସମାରୋହରେ ପାଳିତ ହୋଇଗଲେ ଯେ ତାଙ୍କ ତ୍ୟାଗ, ସହିଷ୍ଣୁତା, ଓ ଦେଶପ୍ରୀତିକୁ ଉପଯୁକ୍ତ ମର୍ଯ୍ୟାଦା ଦିଆଗଲା ତାହା ନୁହେଁ, ତାଙ୍କର ଭାବ ଧାରାରେ ଉଦ୍‌ବୁଦ୍ଧ ହେବାପାଇଁ ଏଦେଶର ବାଣିଜ୍ୟ, ପରିବହନ, ଶିଳ୍ପ, କୃଷି, ଗୋପାଳନ, ସର୍ବୋପରି ଜନସାଧାରଣଙ୍କ ଚରିତ୍ରବଳରେ ଯୁଗାନ୍ତରକାରୀ ବିପ୍ଳବ ଆଣିବା ଦରକାର । ●



# ଓଡ଼ିଶାର ଉପାନ୍ତ ଅଞ୍ଚଳରେ ଓଡ଼ିଆ ଭାଷା ସଂସ୍କୃତିର ସାଂପ୍ରତିକ ଅବସ୍ଥା

☐ ପ୍ରଫୁଲ୍ଲ କୁମାର ମହାପାତ୍ର

କୌଣସି ଜାତିର ଉନ୍ନତି କେବଳ ଅର୍ଥନୈତିକ ଉନ୍ନତି ମଧ୍ୟରେ ସୀମାବଦ୍ଧ ନୁହେଁ । ଗୋଟିଏ ସମୃଦ୍ଧ ସମାଜ ବା ଜାତି ପକ୍ଷରେ, ଅର୍ଥନୈତିକ ଆତ୍ମନିର୍ଭରଶୀଳତା ଏବଂ ସମୃଦ୍ଧି ଯେପରି ଅତ୍ୟାବଶ୍ୟକ, ତା'ର ଭାଷା, ସାହିତ୍ୟ, ସଂସ୍କୃତି ଓ ସାଂସ୍କୃତିକ ବିକାଶ ମଧ୍ୟ ସେହିପରି ଅତ୍ୟାବଶ୍ୟକ । ଭାଷା ଓ ସଂସ୍କୃତି ଗୋଟିଏ ଜାତିର ସଭ୍ୟତାର ପରିଚୟ । ୧୯୩୬ ମସିହା ଅପ୍ରେଲ ପହିଲାରେ, ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ସମୟରେ, କେତେକ ଉପାନ୍ତ ଅଞ୍ଚଳ, ମଧ୍ୟପ୍ରଦେଶ, ବିହାର, ବଙ୍ଗ ଓ ତଦାନୀନ୍ତନ ମାନ୍ଦ୍ରାଜ(ବର୍ତ୍ତମାନ-ଆନ୍ଧ୍ର)ରେ ରହିବା ବିଷୟ ପ୍ରାୟ ପ୍ରତ୍ୟେକ ଓଡ଼ିଆ ଜାଣନ୍ତି । ଗଡ଼ଜାତ ସମ୍ମିଶ୍ରଣ ପରେ ପରେ, ଓଡ଼ିଆ ଅଧ୍ୟୁଷିତ ଝାଡ଼ଖଣ୍ଡ ସରାଇକେଳା ଓ ଖରସୁଆଁ କିଛିଦିନ ଓଡ଼ିଶା ଶାସନର ଅନ୍ତର୍ଭୁକ୍ତ ରହି, ତାପରେ ବିହାର ପ୍ରଦେଶରେ ଯୋଡ଼ି ଦିଆଗଲା । ବର୍ତ୍ତମାନ ଓଡ଼ିଶାର ବହିର୍ଭାଞ୍ଚଳ ଭାବରେ ପରିଚିତ ଏହି ସବୁ ଅଞ୍ଚଳରେ ବସବାସ କରୁଥିବା ବହୁ ସଂଖ୍ୟକ ଓଡ଼ିଆଭାଷୀମାନେ, ଅସହାୟ ଅବସ୍ଥାରେ ତଥା ଏକ ନିଷ୍ଠୁର ପରିବେଶ ମଧ୍ୟରେ, କ୍ରମେ କ୍ରମେ ସେମାନଙ୍କର ମାତୃଭାଷା ଓ ସାଂସ୍କୃତିକ ପରମ୍ପରାଠାରୁ ଦୂରକୁ ହଟି ଯାଉଛନ୍ତି, ଏକଥା କୌଣସି ଜାତିପ୍ରାଣ ସ୍ୱାଭିମାନୀ ଓଡ଼ିଆକୁ ବାଧିବାର କଥା । ସେ ଯାହାହେଉନା କାହିଁକି, ବର୍ତ୍ତମାନ ପରିପ୍ରେକ୍ଷୀରେ, ଖୋଦ୍ ଆମ ରାଜ୍ୟର ଉପାନ୍ତ ଅଞ୍ଚଳଗୁଡ଼ିକରେ, ଆମର ଭାଷା, ସଂସ୍କୃତି ତଥା ଅର୍ଥନୈତିକ ପରିସ୍ଥିତି ଯେ କେତେଦୂର ସୁରକ୍ଷିତ ଅଛି ସେ ସମ୍ପର୍କରେ ଅନୁଧ୍ୟାନ କଲେ, ଯେ କୌଣସି ସଚେତନଶୀଳ, ଜାତିପ୍ରେମୀ ତଥା ସ୍ୱାଭିମାନୀ ଓଡ଼ିଆ ଯେ ଦୁଃଖାଭିଭୂତ ହେବ, ଏଥିରେ ସନ୍ଦେହ ନାହିଁ । କେବଳ ଭୌଗୋଳିକ ସୀମାରେଖା ଦିଗଟିକୁ ବାଦ୍ ଦେଲେ ଆମର ଜାତୀୟ ସ୍ୱାତନ୍ତ୍ର୍ୟ ଓ ଭାଷା, ସଂସ୍କୃତିର ବିକାଶ, ପ୍ରାୟ ସମସ୍ତ ସୀମାନ୍ତ ଜିଲ୍ଲାମାନଙ୍କରେ ଏକ ସଂକଟମୟ ପରିସ୍ଥିତିର ସମ୍ମୁଖୀନ । ଓଡ଼ିଶା, ଅନ୍ୟ ସବୁ ରାଜ୍ୟମାନଙ୍କଠାରୁ ସବୁକ୍ଷେତ୍ରରେ ପଛୁଆ, ଏକଥା ସମଗ୍ର ଭାରତବର୍ଷର ଜନସାଧାରଣ ଜାଣନ୍ତି । ସ୍ୱାଧୀନତା ପରେ, ଅନ୍ୟାନ୍ୟ ପ୍ରଦେଶ ପରି ଓଡ଼ିଶାରେ କୃଷି, ଶିଳ୍ପ, ସଂସ୍କୃତି ଓ ସଭ୍ୟତାର ବିକାଶ ହୋଇଥିଲେ ମଧ୍ୟ, ଓଡ଼ିଆ ଲୋକେ, ଆଶାନୁରୂପ ଭାବେ ଅଗ୍ରଗତି କରି ପାରି ନାହାନ୍ତି ଏବଂ ଦେଶରେ ବିଭିନ୍ନ କଳ-କାରଖାନା ଓ ଯୋଜନା ହୋଇଥିଲେ ମଧ୍ୟ ତନ୍ମଧ୍ୟରେ ସଂଖ୍ୟାନୁପାତରେ ନିଯୁକ୍ତି ପାଇ ପାରୁନାହାନ୍ତି । ବ୍ୟବସାୟ ବାଣିଜ୍ୟ, ଶିଳ୍ପ-ପ୍ରତିଷ୍ଠା ଓ ଅନ୍ୟାନ୍ୟ କ୍ଷେତ୍ରରେ ମଧ୍ୟ ଉପଯୁକ୍ତ ସୁବିଧା ସୁଯୋଗ ରାଜ୍ୟବାସୀମାନଙ୍କୁ ମିଳି ପାରୁନାହିଁ । ଏଣୁ ଉପାନ୍ତ ଅଞ୍ଚଳ ଗୁଡ଼ିକ-ରେ, ଓଡ଼ିଆ ଭାଷା, ସଂସ୍କୃତିକୁ ସୁରକ୍ଷିତ ତଥା ଉଜ୍ଜୀବିତ କରି ରଖିବା ପାଇଁ ଏକ ସୁଦୃଢ଼ ଜାତୀୟ ଅର୍ଥନୀତିର ଆବଶ୍ୟକତା ରହିଛି ।

ଓଡ଼ିଆ ଲୋକମାନଙ୍କ ଅର୍ଥନୈତିକ ଅବସ୍ଥାର ଉନ୍ନତି ବିନା, ଭାଷା ସଂସ୍କୃତିର ବିକାଶ ପରିକଳ୍ପନା କରିବା ଏକ ଦୁଃସ୍ୱପ୍ନ ମାତ୍ର । ଓଡ଼ିଶା ଭାରତର ପ୍ରାକୃତିକ ସମ୍ପଦର ଗନ୍ତାଘର କହିଲେ ଅତ୍ୟୁକ୍ତି ହେବନାହିଁ । ଏହି ପ୍ରଦେଶର ସୀମାନ୍ତବର୍ତ୍ତୀ ଜିଲ୍ଲାମାନଙ୍କରେ ପ୍ରଚୁର ପରିମାଣରେ ଖଣିଜ ସମ୍ପଦ ଗଚ୍ଛିତ ରହିଥିବା ଦୃଷ୍ଟିରୁ, କେନ୍ଦ୍ର ସରକାରଙ୍କ ପକ୍ଷରୁ, ଏସବୁ ଅଞ୍ଚଳରେ କେତେକ ବୃହତ୍ ପ୍ରକଳ୍ପ ପ୍ରତିଷ୍ଠା କରାଯାଇ ଅଛି । ଓଡ଼ିଶାର ପ୍ରତ୍ୟେକ ଅଞ୍ଚଳକୁ ଉପଯୁକ୍ତ ଗମନାଗମନର ସୁବିଧା ସୁଯୋଗ ନଥିବା ଦୃଷ୍ଟିରୁ, ପଡୋଶୀ ରାଜ୍ୟମାନଙ୍କରୁ ହଜାର ହଜାର ସଂଖ୍ୟାରେ ପ୍ରାୟ ସବୁ ଶ୍ରେଣୀର ଲୋକମାନେ ଅବାଧ ପ୍ରବେଶ କରି, ରାଜ୍ୟବାସୀମାନଙ୍କର ନ୍ୟାଯ୍ୟ ଅଧିକାରକୁ ବାସଯୋଗ୍ୟ କରିବା ସଙ୍ଗେ ସଙ୍ଗେ, ପ୍ରାୟସବୁ କ୍ଷେତ୍ରରେ ସୁବିଧା ସୁଯୋଗର ଅଧିକାରୀ ହୋଇ, ଏହି ସବୁ ଶିଳ୍ପ ସମୃଦ୍ଧ ଅଞ୍ଚଳମାନଙ୍କରେ ସ୍ଥାୟୀ ଭାବରେ ବସବାସ କରିବାରେ ଲାଗିପଡ଼ିଛନ୍ତି । ଫଳରେ ରାଜ୍ୟବାସୀ ଏସବୁ ସ୍ଥାନରେ କ୍ରମେ କ୍ରମେ ସଂଖ୍ୟାନ୍ୟୁନ ହେବାକୁ ଯାଉଛନ୍ତି ଏବଂ ସଂଖ୍ୟାନ୍ୟୁନତା ଦୃଷ୍ଟିରୁ, ରାଜ୍ୟର ନିଜସ୍ୱ ଭାଷା ଓ ସଂସ୍କୃତି ମଧ୍ୟ ଆଶାନୁରୂପ ଅଗ୍ରଗତି କରିପାରୁନାହିଁ । ହିନ୍ଦି ଓ ଇଂରାଜୀ ଭାଷାର ବହୁଳ ବ୍ୟବହାର, ଇଂରାଜୀ ମାଧ୍ୟମ ସ୍କୁଲଗୁଡ଼ିକର ଆଶାତୀତ ସଂଖ୍ୟାବୃଦ୍ଧି, ବାହାର ରାଜ୍ୟବାସୀମାନଙ୍କର ଭାଷା, ସଂସ୍କୃତିର ବହୁଳ ପ୍ରଚାର, ପ୍ରସାର ତଥା ପ୍ରଭାବ ଓଡ଼ିଆ ଭାଷା ସଂସ୍କୃତିର ବିକାଶରେ ଅନ୍ତରାୟ ସୃଷ୍ଟି କରି ଆସୁଛି । ଓଡ଼ିଆ ମାଧ୍ୟମ ସ୍କୁଲଗୁଡ଼ିକରେ ଛାତ୍ରଛାତ୍ରୀ ସଂଖ୍ୟା ପ୍ରାୟ ନାହିଁ କହିଲେ ଚଳେ । ଓଡ଼ିଆ ପତ୍ର ପତ୍ରିକା ପ୍ରତି ଲୋକମାନଙ୍କର ଆଗ୍ରହ କ୍ରମଶଃ କ୍ଷୀଣ ହେବାରେ ଲାଗିଛି । ଏହା ବ୍ୟତୀତ ଏ ସବୁ ଅଞ୍ଚଳରେ, ବ୍ୟବସାୟ ବାଣିଜ୍ୟ, ଘରୋଇ ଶିଳ୍ପାନୁଷ୍ଠାନ, ଜାଗାଜମି ଠିକାଦାରୀ ଇତ୍ୟାଦି ସମସ୍ତ ମୁଖ୍ୟତଃ ରାଜ୍ୟବାହାରର ଲୋକମାନଙ୍କର ନିୟନ୍ତ୍ରଣାଧୀନ । ରାଉରକେଲା, ସୁନାବେଡ଼ା ପରି କେତେକ ଉପାନ୍ତ ଅଞ୍ଚଳରେ କେନ୍ଦ୍ର ସରକାରଙ୍କ ଉଦ୍ୟମରେ ପ୍ରତିଷ୍ଠିତ, ବୃହତ କଳ କାରଖାନା ଗୁଡ଼ିକରେ, ରାଜ୍ୟବାସୀମାନେ ନିଯୁକ୍ତି କ୍ଷେତ୍ରରେ ଉପଯୁକ୍ତ ନ୍ୟାୟ ପାଇବାରୁ ବଞ୍ଚିତ । ରାଜ୍ୟ ସରକାରଙ୍କର ଆବଶ୍ୟକୀୟ ହସ୍ତକ୍ଷେପ ତଥା ନିୟନ୍ତ୍ରଣ ଅଭାବରୁ, ବାହାର ପ୍ରଦେଶର ଲୋକମାନେ ସେମାନଙ୍କର ପ୍ରଭାବ ବୃଦ୍ଧି କରି ଚାଲିଛନ୍ତି । ଏସବୁ ଉପାନ୍ତ ଜିଲ୍ଲାମାନଙ୍କରେ, କେତେକ ସ୍ୱେଚ୍ଛାସେବୀ ଅନୁଷ୍ଠାନ, ଓଡ଼ିଆ ଭାଷା, ସଂସ୍କୃତିକୁ ଉଜ୍ଜୀବିତ କରି ରଖିବା ପାଇଁ ଉଦ୍ୟମ କରି ଆସୁଥିଲେ ମଧ୍ୟ, ସରକାରୀ ଓ ବେସରକାରୀ ସ୍ତରରୁ ଆବଶ୍ୟକୀୟ ସହଯୋଗ ଓ ପ୍ରେରଣାର ଅଭାବରୁ ବିଶେଷ ସୁଫଳ ମିଳି ପାରୁନାହିଁ । ଘୋର ପରିତାପର ବିଷୟ ଏହିକି, ବର୍ତ୍ତମାନ ଦେଖାଯାଉଛି ଯେ, ବହୁ ସଂଖ୍ୟାରେ ଛାତ୍ରଛାତ୍ରୀମାନେ ଓଡ଼ିଆ ଭାଷା ଓ ସାହିତ୍ୟରେ ଉଚ୍ଚଶିକ୍ଷା ଲାଭ ପରେ, ସେମାନଙ୍କ ପାଇଁ ବିଶେଷତଃ ଓଡ଼ିଶାରେ ସରକାରୀ ବା ବେସରକାରୀ କ୍ଷେତ୍ରରେ ନିଯୁକ୍ତିର ସୁବିଧା ନଥିବାରୁ ବହୁ ଯୁବକ ଯୁବତୀଙ୍କ ମନରେ ଓଡ଼ିଆ ଭାଷା ପ୍ରତି ନୈରାଶ୍ୟ ଭାବ ସୃଷ୍ଟି ହେଉଛି । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପରଠାରୁ, ଆଜି ପର୍ଯ୍ୟନ୍ତ ଓଡ଼ିଆ ଭାଷା ସାହିତ୍ୟର ଉନ୍ନତି ପାଇଁ ବିଭିନ୍ନ ସମୟରେ କେତେ ଉଦ୍‌ବୋଧନ ଓ ସ୍ୱପ୍ନ ଦିବାସ୍ୱପ୍ନରେ ପରିଣତ ହୋଇଛି । କେବଳ ଅର୍ଥାଭାବ ପାଇଁ ନୁହେଁ, ଏହି ଅଧଃପତନ କେବଳ ଜାତିର ହୀନମନ୍ୟତା ନିମିତ୍ତ । ବହୁ ବିଳମ୍ବରେ, ଓଡ଼ିଶା ସରକାର ଓଡ଼ିଆ ଭାଷାକୁ ସରକାରୀ ଭାଷାରୂପେ ସ୍ୱୀକୃତି ଦେଲେ ମଧ୍ୟ ସରକାରୀ କାର୍ଯ୍ୟାଳୟ ଓ ଅନୁଷ୍ଠାନ ମାନଙ୍କରେ ଭାଷାର ପ୍ରଚଳନ ଏଯାବତ୍ ହୋଇ ପାରି ନାହିଁ ।

ରାଜ୍ୟର ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ଯେତେବେଳେ ଖୋଦ୍ ସରକାରଙ୍କ ଆଦେଶ କାର୍ଯ୍ୟକାରୀ ହୋଇ ପାରୁନାହିଁ, ଉପାନ୍ତ ଅଞ୍ଚଳରେ ଓଡ଼ିଆ ଭାଷାକୁ ସରକାରୀ ଦପ୍ତରମାନଙ୍କରେ ପ୍ରଚଳନ କରିବା ଏକ ବୃଥା ଆସ୍ଫାଳନ ଛଡ଼ା ଅନ୍ୟ କିଛି ନୁହେଁ । ଏ ସବୁ ବ୍ୟତିକ୍ରମ ପାଇଁ ରାଜ୍ୟ ସରକାର ଯେତିକି ପରିମାଣରେ ଦାୟୀ; ପ୍ରଶାସନ ଦାୟିତ୍ୱରେ ଥିବା ଅଧିକାରୀମାନେ ମଧ୍ୟ ସମ ପରିମାଣରେ ଦାୟୀ । ଫଳରେ ଏପରି ଏକ ସମୟ ହୁଏତ ଆସିପାରେ, ଉପାନ୍ତ ଅଞ୍ଚଳରୁ ଓଡ଼ିଆ ଭାଷା, ସଂସ୍କୃତି ସଂପୂର୍ଣ୍ଣ ଭାବେ ଲୋପ ପାଇବ । ସଙ୍ଗେ ସଙ୍ଗେ, ଏ ଅଞ୍ଚଳଗୁଡ଼ିକ ରାଜ୍ୟ ମାନଚିତ୍ରରୁ ବିଚ୍ଛିନ୍ନ ହୋଇଯିବା କିଛି ବିଚିତ୍ର ନୁହେଁ । ସେତେବେଳେ ଉପାନ୍ତ ଅଞ୍ଚଳଗୁଡ଼ିକ ବିଚ୍ଛିନ୍ନାଞ୍ଚଳ ଭାବରେ ପରିଗଣିତ ହେବା ସ୍ୱାଭାବିକ । ଓଡ଼ିଶାରେ ସମସ୍ତ ସୁବିଧା ସୁଯୋଗ, ପ୍ରାକୃତିକ ଓ ଖଣିଜ ସଂପଦ ପରିପୂର୍ଣ୍ଣ ରହି ମଧ୍ୟ, ଆମର ଶିକ୍ଷା, ଚେଷ୍ଟା, ଅନୁରକ୍ତି, ସହଯୋଗ, ସ୍ୱାଭିମାନ ଓ ସର୍ବୋପରି ଜାତୀୟତା ମୂଲ୍ୟବୋଧର ଅଭାବରୁ ଆମେ ଆଜି ପଛରେ ପଡ଼ି ଯାଇଅଛୁ । ଏଣୁ ସମୟ ଥାଉ ଥାଉ, ଆଉ ଅଧିକ କାଳ ବିଳମ୍ବ ନକରି; ସମସ୍ତ ଚିନ୍ତାଶୀଳ, ଶିକ୍ଷିତ ଓଡ଼ିଆ ସବୁ ପ୍ରକାର ହୀନମନ୍ୟତା ପରିହାର କରି, ଆଜି ଏହି ପବିତ୍ର ଉତ୍କଳ ଦିବସରେ ପ୍ରତିଜ୍ଞାବଦ୍ଧ ହୋଇ ଓଡ଼ିଶାର ମହାନ୍ ଐତିହ୍ୟ ଏବଂ ପରମ୍ପରାକୁ ବଜାୟ ରଖି ପ୍ରାକୃତିକ ଓ ଖଣିଜ ସଂପଦର ସଦ୍‌ବିନିଯୋଗ କରି ଏକ ଉନ୍ନତ ତଥା ସମୃଦ୍ଧିଶାଳୀ ମହାନ ଓଡ଼ିଶା ଗଠନ ପାଇଁ ଉଦ୍ୟମ ଅବ୍ୟାହତ ରଖିବା ସଙ୍ଗେ ସଙ୍ଗେ, ଓଡ଼ିଆ ଭାଷା, ସଂସ୍କୃତିର ସୁରକ୍ଷା ଓ ଅଭିବୃଦ୍ଧି ପାଇଁ ବଜ୍ରଶପଥ ନିଅନ୍ତୁ ।


ସାଧାରଣ ସମ୍ପାଦକ

ଉତ୍କଳ ସମ୍ମିଳନୀ, ରାଉରକେଲା ଶାଖା

# ଆସ ହେ ଉତ୍କଳ ଜ୍ୟୋତି

ଅଲେଖ ସାହୁ

ନବଜାଗରଣେ ନବଗୁଞ୍ଜରଣେ
ଅମ୍ବରେ ବିଜୟ ନେତ
ଯୁବାଜନ ଶକ୍ତି ମଧ୍ୟାହ୍ନ ପ୍ରଭାସ୍ୱ
ସେ ଦୀପ ଚିର ଅକ୍ଷତ ।

ସବୁ ଯାଉ ପଛେ ମହତ୍ତ୍ୱ ରଖିବା
ଆସରେ ଓଡ଼ିଆ ବୀର
ଗଙ୍ଗା ଗୋଦାବରୀ ସମଗ୍ର ଓଡ଼ିଶା
ବଜାଅ ବିଜୟ ସ୍ୱର ।

ତ୍ୟାଗୀ ରାଜପଣ ତୁମେ ଭରି ଦେଲ
ହୃଦୟର ସିଂହାସନ
ସୁନାର ଉତ୍କଳ ସ୍ୱତନ୍ତ୍ରତା ମୂଲ୍ୟ
ପାରଳା ରାଜନ ଦାନେ ।

ଭାଷା ମାତୃଭୂମି ଯୁଗ ଯୁଗ ଧରି
ଥିବ ଥିବ ଯାଏ କହି
କୃଷ୍ଣଚନ୍ଦ୍ର ନୃପ ଶ୍ରେଷ୍ଠ ଗଜପତି
ସ୍ୱର୍ଣ୍ଣାକ୍ଷର ଅଛୁ ରହି ।

ଧୈର୍ଯ୍ୟ ଧରି ଶୁଣ ଭ୍ରଷ୍ଟାଚାରୀ ଦଳ
କେତେ ଦାନ ସ୍ୱାର୍ଥପଣ
ଜଣା ପଡ଼ିଲାଣି ମାତୃଭାଷା ପ୍ରୀତି
ଜାତୀୟତା ଅବଦାନ ।

ତୁମେ ପୁଣି ଆସ ଶିଖାଟିଏ ହୋଇ
ସୁନାର ଉତ୍କଳ ଭୂଇଁ
ଜାଳି ପୋଡ଼ି ଦେବ ଯେତେକ ଯନ୍ତ୍ରଣା
ବିଚ୍ଛିନ୍ନାଞ୍ଚଳକୁ ନେଇ ।

ତୂର୍ଣ୍ଣାଙ୍ଗ ଉତ୍କଳ ଉପାନ୍ତେ ଦମନ
ଆସ କୃଷ୍ଣ ମଧୁ ବ୍ୟାସ
ଜାତୀୟ ସମରେ ଶତ ଶତ ବୀର
ଦେଖ ଆମ ପରିବେଶ ।

ବନ୍ଦେ ଗଜପତି ଜାତୀୟ ସଂହତି
ମାନସ ମୂରତି କୀର୍ତ୍ତି
ଜାତି ଇତିହାସେ ହେଚର ନମସ୍ୟ
ଯେନ୍ନବ ପାରଳା ପତି ।

# ରାଉରକେଲା ପୌର ପାଳିକା  ରାଉରକେଲା

### ରାଉରକେଲା ପୌର ପରିଷଦ ସହରବାସୀଙ୍କୁ ହାର୍ଦ୍ଦିକ ଶୁଭେଚ୍ଛା ଜଣାଉଛି

ଜନସାଧାରଣଙ୍କ ମୌଳିକ ଆବଶ୍ୟକତା ପୂରଣ କରିବା ଦିଗରେ ପରିଷଦ ନିଜର ନିରବଚ୍ଛିନ୍ନ ସେବା କରିଆସୁଅଛି । ଏତଦ୍‌ବ୍ୟତୀତ ପରିଷଦ ରାଉରକେଲା ସହରର ସର୍ବବିଧ ଉନ୍ନତି ନିମନ୍ତେ ନିମ୍ନଲିଖିତ କାର୍ଯ୍ୟ ସଂପାଦନ ସଂପର୍କରେ ସୂଚନା ଦେଉଅଛି ।

- ବସ୍ତି ଉନ୍ନୟନ ନିମନ୍ତେ ସହର ମୌଳିକ ସେବା ଯୋଜନା ପ୍ରଚଳନ ।
- ସାମାଜିକ କାର୍ଯ୍ୟାବଳୀ ନିମନ୍ତେ କଲ୍ୟାଣ ମଣ୍ଡପ ନିର୍ମାଣ ।
- ଫୁଟପାଥ ବାସିନ୍ଦାଙ୍କ ସହାୟତା ନିମନ୍ତେ ଗୋଟିଏ ରାତ୍ରୀ ଆଶ୍ରୟ ସ୍ଥଳ ନିର୍ମାଣ ।
- ବସ୍ତି ଓ ସହରାଞ୍ଚଳ ବିଦ୍ୟୁତିକରଣ, ଜଳଯୋଗାଣ, ପରିମଳ ବ୍ୟବସ୍ଥାର ଉନ୍ନତି ନିମନ୍ତେ ଅଗ୍ରାଧିକାର ଭିତ୍ତିରେ ପଦକ୍ଷେପ ।
- ଜନସାଧାରଣଙ୍କର ଆର୍ଥିକ ମାନଦଣ୍ଡକୁ ସୁଦୃଢ଼ କରିବା ଓ ଦରିଦ୍ର ସୀମାରେଖା ଉପରକୁ ଆଣିବା ନିମନ୍ତେ ନେହେରୁ ରୋଜଗାର ଯୋଜନା ପ୍ରଚଳନ ।

**ନିବେଦନ**

- ପରିଷଦ ଦେୟ ଯଥା ସମୟରେ ଦେଇ କରି ପରିଷଦକୁ ନିଜର କର୍ତ୍ତବ୍ୟ ପାଳନରେ ସାହାଯ୍ୟ କରନ୍ତୁ ।
- ସହରର ରାସ୍ତା କଡରେ ଏବଂ ଅନ୍ୟାନ୍ୟ ସ୍ଥାନରେ ଥିବା ଖାଲି ସ୍ଥାନ ଜବର ଦଖଲ କରନ୍ତୁ ନାହିଁ ।
- ନିଜର ଗାଈ ଗୋରୁକୁ ରାସ୍ତା ଉପରେ ଛାଡନ୍ତୁ ନାହିଁ ।

**ସହରର ସମୃଦ୍ଧି ନିମନ୍ତେ ଆପଣଙ୍କର ସହଯୋଗ ଏକାନ୍ତ କାମ୍ୟ ।**

| ଶ୍ରୀ ନିହାର ରାୟ | ଶ୍ରୀ ଏନ୍.ସି.ରାଉତରାୟ | ଶ୍ରୀ ପଦ୍ମ ଲୋଚନ ନାୟକ |
|---|---|---|
| ନଗରପାଳ | ଉପ-ନଗରପାଳ | ଓ.ଏ.ଏସ୍ (୧) |
| | | ନିର୍ବାହୀ ଅଧିକାରୀ |

□ During the Ist Round Table Conference, Krushna Chandra Gajapati sought permission of the British Prime Minister to raise the question of creating a separate province for Oriya-speaking people. In putting the matter as a whole, a promise was given by the Chairman to the Raja of Parlakhemundi, that he should say something on Orissa in general, though as a matter of fact, the agenda did not include the matter of Orissa. Krushna Chandra Gajapati made an emphatic speech in the Conference.

His short speech in the Round Table Conference was historic and was so touching that he was able to convince the British authorities about the genuineness of the demands of Oriyas. He moved the proposal for amalgamation of Orissa into a separate province as the mouth piece of Oriyas. □

# II The Epoch Making Speech That Shaped The Destiny Of The Oriyas II

"Sir, on behalf of 10 million of Oriyas, the subjects of His Majesty, I rise to represent their long standing grievances on this occasion. The memorandum I have placed in your hand a few days since has been able, I hope, to give a clear insight into all the present difficulties the Oriyas are placed under, situated as they are in 4 different provinces. I will not tire you with the details of the history for unification of the Oriyas, agitating as they have been for the last quarter of a century and more. As one well-informed of the facts, I should lay before you all today that the formation of separate province for the Oriyas is a life and death problem to them. They feel tortured with all the disabilities and disadvantages of one being a distant adjunct lying at the tail end of every province wherever they are, far away from the seat of Government of the respective province and always in a unique minority, completely lost sight of being merged in the millions of population of these provinces.

I appeal to you all gentlemen, to appreciate the peculiar position of the Oriyas and their demand as recommended by several official bodies time after time. We want a province of our own on the basis of language and race to be ourselves, a homogeneous unit with feelings of contentment and peace, to realise and be benefitted by the projected reforms to India by both Indian and British politicians, who look forward to the day, when the

United States of India will consist of small federate states, based on common language and race without a separate province for the 10 million of Oriyas, let me tell you, Sir, that all you labour at this conference to develop parliamentary institutions in provinces with autonomous powers, will prove on the country, seriously injurious to the Oriyas.

The patience with which we have waited and the loyalty to the British Crown with which we have looked upto always for justice, sympathy and fair treatment, have proved as Lord Curzon put it once, "Were the Orissans an agitating people, which they are not, they would soon make their protest heard. As it is, they have been sacrificed without compunction"

I am right, I think, Sir, in my presumption, that you all consider the Oriya problem as the least controversial of all the problems that this Conference has had to deal with. You are aware that the Simon Commission, the Government of India despatch and all the provincial Governments consented have recognised the urgent necessity for the immediate solution of the question. The question of finance, however, is evidently the only obstacle in the way of their recommending the formation of a separate province for the Oriyas. My answer to that is that finance is not, after all, a fence of such insurmountable dimensions when we have to save a great historic race with ancient civilisation and culture, from being obliterated. The old saying "cut your coat according to the cloth" if strictly applied, comes to the rescue, to a great extent in forming the long-sought after Orissa province; and again, I am fully confident that the Central Government with the same feelings of benefication will come to the rescue of the new province as it did in the case of Assam, Bihar and Orissa when first they were created. One redeeming feature, however, which I shall point out to you is that we will be starting with hardly any debts; but on the other hand, with appreciably more income than Assam to start with At page 404 of the memorandum submitted by the Government of Bihar and Orissa to the Indian Statutory Commission, we gather that the annual revenue of the Orissa division of Bihar and Orissa would be about 10 Million of rupees, and I am sure that with the additions of the districts as recorded by different official bodies with their gathered evidences of the people of those parts and the people of other adjoining Oriya-speaking areas, that may be recorded by the Boundary Commission, will bring in about 202 Million of rupees to solve the financial difficulty. I may illustrate that the Agency tracts with their scope for excise revenue, large areas of waste lands that are being developed and valuable forest produce, will contribute largely to the provincial funds. In addation to this their is an extensive coastal land containing large sheets of salt pans and scope for shipping between different parts of the Empire,

further to increase the provincial revenue. I can also assure you, Sir, that if circumstances so necessatite, we the Oriyas are prepared to bear the burden of special taxation to meet any financial deficit of the future province.

Without further encroaching upon your valuable time, enough I have been able to impress upon you gentlemen, with the urgency of the problem. It is for you to make or mar the destiny of an ancient race, vast in numbers, cultured and advanced, but placed under painful circumstances now, though their past was bright and full of unique interest and of historical importance as those of any of the present advanced communities of India".



# Maharaj of Parlakimedi

## SIR SAMMUEL HOARE

Since the great Orissa famine of 1866 successive Secretaries of State for India of the British Government had been approached in each decade in connection with the question of amalgamation of the Oriya speaking tracts. They expressed their sympathy but could not take any bold and decisive steps. It was for Sammuel Hoare to make a final declaration of the separate Province for Oriyas after a long and arduous struggle of over sixty years.

In 1868 Sir Stafford Northcote simply suggested the separation of Orissa from Bengal During the time of the agitation for restoration of Oriya language in Sambalpur then under Central Provinces, Mr. M. S. Das on behalf of Utkal Sabha ( Orissa Association ) approached Lord George Hamilton in London in September 1897 and placed before him the recommendation of the Commissioner Mr. Cooke for union of Oriya country. The Lord referred the question to the Viceroy and Lord Curzon took it up.

During Bengal partition agitation Mr. M. S. Das approached Lord Morley on behalf of Utkal Sammilani in October 1907 and reiterated the demand of the Oriyas and was asked to wait till after the reforms of 1907. During the first great war when Mr. Montagu came to India in connection with the reforms, Mr. Das met him and Viceroy Lord Chelmsford as the leader of a deputation in 1917 in Calcutta on behalf of Utkal Sammilani and pressed the

question as a result of which they recommended simply the institution of a sub-Province for Orissa. Matters were dragged on till the Simmon Commission recommended the consideration of formation of Orissa Province as a result of a deputation led by Bahu Braj Sundar Das in 1929.

It was during the first session of the Round Table Conference in the beginning of January, 1931 that the Maharaja as a delegate thereof stressed the Orissa question and Sir Sammuel Hoare on behalf of the British Government announced the formation of Orissa as a separate Province

On the 12th January, 1933 during the session of the Third Round Table Conference there was held the Orissa Dinner in London, Mr. B Das, M. P. attended the the dinner. Sir Sammuel Hoare the then Secretary of state being the Chief Guest alluded to the great historic past of Orissa, how Orissan Civilisation was much older than the Christian era, how the great religious centre of Lord Jagannath happens to be a great religious centre of the world, how at that shrine of Lord Jagannath all caste differences merge and they all partake of the same sacred prasad and how this religious band of unity kept the Oriyas together during the three hundred years since the conquest of Orissa by the Moghuls. Sir Sammuel advised the Oriyas to advance and develop their own distinct culture and civilisation and help the advancement of the Indian Federation for the progress of whole of India.

In his after dinner speech Sir Sammuel said a course of reply as noted by Mr. B Das "The Maharaja of Parlakimedi put the case of the Orissa Province at the First Round Table Conference in 1931 and laid stress on it with the result that the British Government came to the conclusion that the time had come to reunite the Oriya speaking areas under their own separate Province and Oriya populace are under distinguished representation who pressed their case"

On the day of inauguration of the separate Province on the Ist April, 1936 Sir Sammuel sent the following message and greeting to the people of Orissa.

"16, Cadogan Gardens, London S.W.1. On the inauguration of the new province of Orissa I am glad to have opportunity of sending a message of greeting and congratulation to the Oriya people and to wish them all prosperity and success in future. Ever since I became acquainted with the long history of the Oriya people and this cultural traditions I have actively sympathised with their desire to be reunited and I am glad that I had the chance of contributing towards the satisfaction of their hopes. The vigorous spirit which has survived so long a period of strengh to the new province and I shall watch her future progress with confidence and interest."

It was the Maharaja of Parlakimedi who acquainted Sir Sammuel Hoare with the long history and cultural traditions of the Oriya people and their desire to be united and the result was the steps taken by Sir Sammuel who referred to the part played by the Maharaja in the famous dinner-speech and the ultimate creation of separate Province.

(Quoted from the notes kept by the late Mr. Bhubanandan Das, M.P.)

(Taken from Souvenir published on Gajapati's 78th. Birth Day Celebration - 1969.)

" It is certainly very difficult to guess what could have been the size and character of the state had it not been born in 1936 and delayed till the States Reorganisation Committee

# Maharaja Krishna Chandra Gajapati's Contributions to the Cultural area of Orissa

Dr. Krishna Chandra Jena

The Maharaja of Parlakhemundi Krishna chandra Gajapati Deb has remained immortal in the pages of political history of Orissa. There is no second opinion on the thesis that the formation of a separate Orissa province should have been almost an impossible task without his contributions. Of course as it happened, in course of time, there was a new thinking on the idea of linguistic formation of states in India and there were a number of linguistic states on this line. It might have been just possible that Orissa should have seen the light of the day after independene along with other states. It is certainly very difficult to guess what could have been the size and character of the state had it not been born in 1936 and delayed till the States Reorganisation Committee. However, that the new province was born in 1936 along with the province of Sindh changed the map of India that early. An American Historian Prof. Stanley Wolpert has commented that the formation of Orissa as a separate province was only a concession given to the Hindus on the Eastern side as a balance of formation of a separate Muslim province on the western side. There are still others who feel that the Orissa province was a gift for the role the Oriyas played at the time of the Simon Commission as different from the role played by the Indian National Congress. What would have happened had the Oriya Movement opposed the Simon Commission at that critical juncture of British history

in India is very difficult to presume.

History is notorious for remembering the right things in a wrong way. It is generally said that History notes the dates and names correctly but makes all mistakes on facts. Therefore, at this stage of our history, it is very difficult to make a correct estimate of the contributions of various leaders. Time has become misty and images are blurred. But, one image remains above every thing that of Maharaja Krishna Chandra Dev as a glaring example of political intelligence and diplomacy. There have been criticism of opportunism but, understood in the context of that period, it has to be accepted as a method of political sagacity. He is definitely the best of the best in the area of political life in Orissa.

We do not assess the life of a statesman only under the light of political activity. There are other dimensions which and to the beauty a man's contribution in life. Cultural contributions occupy a major place in this context. Maharaja of Parlakhemundi did great service to the field of education, literature, art and other forms of creative activity. This is without parallel. There had been a number of rulers in Orissa and some of them were much richer than the Maharaja. But, few had taken that keen interest in the resurrgence of Oriya culture as the Maharaja did.

Paralakhemundi had a rich tradition of folk literature and art. It might be due to the encouragement offered by successive Rajas of Parlakhemundi that a galaxy of writers and poets had risen in this tiny kingdom. The first theatre pandal was here at Parlakhemundi. The Late Syamasundar Rajguru can be creditted to have influenced the Maharaja in his life of culture and art. Syamasundar Rajguru was the first graduate of the Ganjam district. He was manager of the Padmanabha Theatre. He was chairman of the Parlakhemundi Municipality for fifteen years, He was editor of an English Newspaper Ganjam News. Thus, he was a multi-dimensional personality. There is little doubt that his influence on the Maharaja diverted him towards the current of cultural taste. When Maharaja was a student at the Madras Newington Residential College there was one teacher named Morrison. He was a great influence on the Maharaja The Maharaja had named a part of the college building as Morrison Extension. Next to Morrision, Syamasunder Rajguru was the most visible influence on him. The College was the concrete contribution supported by the high schools both for boys and girls in the town. Had there been no college at Parlakhemundi the state of education in Ganjam and whole of south Orissa should have been lefy neglected The Maharaja was deeply involved in the college. It was not a mere institution but a part of his life. He closely followed the development of the collece and met all the difficulties.

Parlakhemundi's Maharaja's college was a centre for education not only for students of Southern Orissa alone. The Maharaja had offered liberal aid to the poor and deserving students. Therefore, many students from the other northern districts of Orissa also came here for higher education. Those who had the opportunity to be either students or teachers at the time of Maharaja's management of the college did recollect how the Maharaja too keen interest in the welfare of the students. He used to send fruits from his garden and eatables from the palace for the college hostel. If the result was good he used to present to the teachers. He took keen interest in the college sports, particularly cricket. Parlakhemundi had good reputation in this game and this continued even to-day due to the background that was laid by the Maharaja. Besides the college sports and games, the Maharaja encouraged local games, Gymnasium, sword fighting, fighting with sticks and martial sports were encouraged in the town. The backward communities like the Relis and Bauries did take great interest in these activities and improved their health.

The Maharaja was conscious of the special position of the Oriyas in cultural life. They had separate rituals and festivals. Parlakhemundi was a border area and the influence of Telugu culture was obvious. The Oriyas had to fight a constant battle to save their culture from this influence. The Telugus had their art form and separate music. The Maharaja had special interest to preserve the speciality of Oriya drama and art. He used to visit the Padmanabha theatre every day and used to be a constructive critic. His love for the Oriya stage was proved when he visited a drama-Chandragupta during 1966-67 in the Town Hall of Paralakhemundi. That was possibly the last drama he had graciously paid a brief visit. That evening he was not feeling well. The director and writer Sri Satyanarayan Panda went to the palace to invite the Maharaja. The Maharaja understood the feeling of the people and in spite of his ill-health came and encouraged the actors. I was lucky to have had a role in the drama and was fortunate to have been there to see the Maharaja in that condition.

The Maharaja had encouraged Syamasunder Rajguru to write a separate book to emphasise on the festival and rituals of the Oriyas. Syamasundar Rajguru had written - the feasts and fasts of the Oriyas. This was a remarkable contribution which identified the Oriya culture was separate culture. The Maharaja was aware of the delicate position of our culture in this region. The Telugus were pre-dominant in number and their festivals and rituals were expensive. There is a tendency in the field of culture that the higher culture superimposes itself on the lower culture. Following this, the Maharaja apprehended that the Oriyas might be swayed away by the Telugu culture. He was cautious

to see that this did not happen. The palace took the leadership in all cultural and ritualistic functiobs and tne people followed the palace tradion. Thus the Oriya culture was saved. Gopinath Nanada was another man of eminence who received ample help and encouragement from the Maharaja of Paralakhemundi. His contribution to Oriya literature was unique. The Oriya Bhasatatwa should be considered as a pioneer work not only in the Oriya literature but it is considered as an eye-opener in the family of indian languages. Eminent linguists have praised this work as of world srandard. It is surprising to see how the inspiration of the Maharaja was responsible for the birth of such an international work from such a small place like Paralakhemundi.

In the field of music, the Maharaja's contribution was no less Paralakhemundi saw the fusion of the South Iudian music with the North Indian music. It was happy synthesis of the two great classical schools. Apart from the two known classical branches, the local style, Odisi had a fertile ground at Paralakhemundi.

The poems of Kabi Samrat Upendra Bhanja, Kabi Surya Baladev Rath and other lyrists of Oriya literature had full respect in the palace of Paralakhemundi. The Maharaja as a lover of music had encouraged musical sessions now and then. By offering rewards he discovered new talent in the Paralakhemundi region and outside. In course of time the music sessions of Paralakhemundi attracted the attention of many, both in Orissa and present Andhra and there was an easy flow of talent,

The Maharaja of Paralakhemundi had contributed to almost all the branches of art and culture. It is difficult to find an area where he had not made any progress or rendered any help. The present state of cultural position in Southern Orissa in particular and that of Orissa in general should be admitted without a second thought, was primarily due to the Mahareja's love for art and culture.



□ It is not an exaggeration to say that Gajapati's Government did a good job by shouldering the initial responsibilities of self administration in order to provide Political stability which is always an essential attribute of Parliamentary Government. □

# II A Study of the Contributions of Shri Krushna Chandra Gajapati-The Maharaja of Parlakhemundi to the Political Development of Orissa II

□ DR. P. S. N. PATRO

The report of the Joint Select Committee submitted in November 1934 while sticking to the fundamental principles of the white paper recommended changes in some matters and accordingly, in February 1935, a Bill was introduced in the British House of Commons by the Secretary of State of India. The Bill was passed into Law on August 4th, 1935 which was very well known as the Government of India Act , 1935. In January 1936, an order-in-council was enunciated by His Majesty creating the seperate Province of Orissa.

On 1st. April 1936, the province of Orissa was inaugurated and it comprised of six districts namely, Cuttack, Puri, Balasore, Sambalpur, Ganjam and Koraput.

Sir John Austin Hubback became the first Governor of Orissa. Sir Courtney Terrel, the then Chief Justice of both the provinces of Bihar as well as of Orissa, administered the Oath of office to the first Governor. On the eve of the inauguration the British King in his "Message of greetings" stated that the province of Orissa was the first out come of the Government of India Act of 1935 and wished that the new province would get encouragement from the past and prove worthy of the historic tradition of the " Holy Land of Orissa ".

Although Orissa was formed into a separate province, the Oriya tracts of Midnapore

